ରଖାଯାଏ । ମୂଷାଟି ଯେକୌଣସି ବ୍ୟକ୍ତିର ଘରଲେ ମଧ୍ୟ ଗଳିଟି ଘରେ ଏବଂ କୌଣସି ଉପାୟରେ ହେଲେ ମୂଷା ବାହାରକୁ ଯାଇପାରେ ନାହିଁ । ଏହି ପ୍ରଣାଳୀରେ ଗୋଟିଏ ଭୋକଲା ମୂଷା ଘନଘଣ୍ଟା ପ୍ରାୟ ୧୫ ମାଇଲ ବା ତାହାଠାରୁ ଅଧିକ ଦୌଡ଼ିପାରେ । ସେହିପରି ପାଣି ନ ପିଇ ତଣ୍ଟି ଶୁଖିଯାଉଥିବା ମୂଷା ବା ମାଈ ମୂଷାର ସଂସ୍ପର୍ଶରେ ନ ଆସି ସେଥିପାଇଁ ଖୁବ୍ ଉତ୍କଣ୍ଠିତ ହୋଇଥିବା ପୁରୁଷ ମୂଷା ଚକ ଭିତରେ ଅଧିକ ଦୌଡ଼ିଥାଏ; କିନ୍ତୁ ଖାଦ୍ୟ ଖାଉଥିବା ବା ପାଣି ପିଇଥିବା ମୂଷାକୁ ତାହା ଭିତରେ ଛାଡ଼ିଲେ ସେ ଆଦୌ ଦୌଡ଼େନାହିଁ ।

ଆଉ ଏକପ୍ରକାର ପରୀକ୍ଷା ଅଛି; ଯାହାର ନାମ ପ୍ରତିବନ୍ଧକ ପ୍ରଣାଳୀ (Obstruction Method) । ଏଠାରେ ଦୁଇଟି ବାକ୍ସ ବ୍ୟବହୃତ ହୁଏ ଏବଂ ପ୍ରତ୍ୟେକର ଲମ୍ବ, ଓସାର ଓ ଉଚ୍ଚତା ୧୦ ଇଞ୍ଚ ଲେଖାଏଁ ହୋଇଥାଏ । ଦୁଇଟିଯାକ ବାକ୍ସକୁ ସଂଯୋଗ କରିବାପାଇଁ ୧୦ ଇଞ୍ଚ ଲମ୍ବ, ୪ ଇଞ୍ଚ ଚଉଡ଼ା ଏବଂ ୪ ଇଞ୍ଚ ଉଚ୍ଚତାରେ ଏକ ତାରଜାଲିର ରାସ୍ତା ଥାଏ, ଯାହା ଭିତରଦେଇ ଗୋଟିଏ ମୂଷା ଏକ ବାକ୍ସରୁ ଅନ୍ୟ ବାକ୍ସକୁ ଯାଇପାରେ । ସଂଯୋଜକ ଦେହରେ ତମ୍ବାତାର ଗୁଡ଼ାଇ ଖୁବ୍ କମ୍ ଶକ୍ତିର ବିଜୁଳିଶକ୍ତି ପ୍ରବାହିତ କରାଯାଏ । ପ୍ରଥମ ବାକ୍ସ ଭିତରେ ମୂଷା ରହେ ଏବଂ ଦ୍ୱିତୀୟ ବାକ୍ସ ଭିତରେ ଖାଦ୍ୟ ବା ପାଣି ରହେ, ଯାହାକୁ କି ମୂଷା ଦେଖିପାରେ ଏବଂ ଗନ୍ଧ ମଧ୍ୟ ପାଇପାରେ । ଗୋଟିଏ ଖୁବ୍ ଭୋକିଲା ବା ଶୋଷ ହେଉଥିବା ମୂଷାକୁ ପ୍ରଥମ ବାକ୍ସରେ ରଖିଲେ ତାହା ବିଜୁଳିଶକ୍ତି ପରି ପ୍ରତିବନ୍ଧକକୁ ଖାତିର ନ କରି ଅନ୍ୟ ବାକ୍ସକୁ ଚାଲିଯାଏ; କିନ୍ତୁ ଯଦି କମ୍ ଭୋକ ବା ଶୋଷ ହେଉଥାଏ କିମ୍ବା ମୋଟେ ଭୋକ, ଶୋଷ ହେଉ ନଥାଏ, ତେବେ ସେ କ୍ଷେତ୍ରରେ ମୂଷାଟି ବିଜୁଳିଶକ୍ତିକୁ ଭୟ କରି ଅନ୍ୟ ବାକ୍ସକୁ ଯାଏନାହିଁ । ସେହିପରି ମୂଷା ମନରେ ଯଦି ଯୌନମିଳନର ପ୍ରବଳ ଆକାଂକ୍ଷା ଥାଏ ତେବେ ବିଜୁଳିଶକ୍ତିକୁ ଭୟ ନକରି ପୁରୁଷ ମୂଷା ସ୍ତ୍ରୀ ମୂଷା ପାଖକୁ ବା ସ୍ତ୍ରୀ ମୂଷା ପୁରୁଷ ମୂଷା ପାଖକୁ ଚାଲିଯାଏ ।

ଏହି ସବୁ ପରୀକ୍ଷାରୁ ଜଣାଯାଏ, ଯେ, ମୂଷାର ମାନସିକ ପ୍ରବର୍ତ୍ତନା ତା' ଦେହରେ ଚଳନଶକ୍ତି ଯୋଗାଏ । ମୂଷା ଓ ଅନ୍ୟାନ୍ୟ ପ୍ରାଣୀ ମାନଙ୍କର ମଧ୍ୟ ମାନସିକ ପ୍ରବର୍ତ୍ତନା ଅଛି ।

## ମାନସିକ ପ୍ରବର୍ତ୍ତନାର ଅଙ୍ଗ—

ମାନସିକ ପ୍ରବର୍ତ୍ତନା କିପରି ଭାବରେ କାର୍ଯ୍ୟକାରୀ ହେଉଛି ବୁଝିବାକୁ ହେଲେ ଏହାର ବିଭିନ୍ନ ଅଙ୍ଗ ପ୍ରତି ଲକ୍ଷ୍ୟ କରିଯିବା ଉଚିତ । ପ୍ରଧାନତଃ ଏହାର ଚାରୋଟି ଅଙ୍ଗ ଅଛି ସେଗୁଡ଼ିକ ହେଲା ଆବଶ୍ୟକତା (Need) ପ୍ରଣୋଦନା (Drive), ପ୍ରୋତ୍ସାହକ (Incentive) ଏବଂ ଚରମ ଲକ୍ଷ୍ୟ (Goal) ।

ଆବଶ୍ୟକତା ଭିତରେ ବ୍ୟକ୍ତିର ଶାରୀରିକ ଓ ମାନସିକ ଆବଶ୍ୟକତା ଅନ୍ତର୍ଭୁକ୍ତ । ମାନସିକ ଅଭିପ୍ରାୟର ପ୍ରଥମ ସୋପାନ ରୂପେ ଆବଶ୍ୟକତା କାମ କରିଥାଏ; କାରଣ ବ୍ୟକ୍ତିର କୌଣସି ଆବଶ୍ୟକତା ନଥିଲେ ମାନସିକ ଅଭିପ୍ରାୟ ସ୍ଥାନ ପାଏନାହିଁ । ଉଦାହରଣସ୍ୱରୂପ ଭୋକ ହେଲେ ଖାଦ୍ୟ ଦରକାର ହୁଏ ଏବଂ ଶୋଷ ହେଲେ ପାଣିର ଦରକାର ହୁଏ । ତେଣୁ ଭୋକ, ଶୋଷ ବା ସାମାଜିକ ଅଭିଜ୍ଞାନ (Social Recognition) ଆବଶ୍ୟକତାର ଏକ ଏକ ନିଦର୍ଶନ ।

ବ୍ୟକ୍ତିର ସମସ୍ତ ପ୍ରକାର ଆବଶ୍ୟକତା ପୂରଣ ହେବା ଦରକାର । ନଚେତ୍ ଅନେକ ସମୟରେ ସେ ଅତୃପ୍ତି ଅନୁଭବ କରିବ ଏବଂ ପାଗଳ ହୋଇଯିବାର ମଧ୍ୟ ଯଥେଷ୍ଟ ସମ୍ଭାବନା ଅଛି । ଆବଶ୍ୟକତା ପୂରଣକରିବା ପାଇଁ ବ୍ୟକ୍ତିର ମନ ଭିତରେ ଏକପ୍ରକାର ଚଳନଶକ୍ତି ଦେଖାଦିଏ । ତାକୁ ପ୍ରଣୋଦନା (Drive) କୁହାଯାଏ । ପ୍ରଣୋଦନା ବ୍ୟକ୍ତିକୁ ତାଙ୍କର ଆବଶ୍ୟକତା ପୂରଣ ହେବା ସ୍ଥଳରେ (Goal) ପହଞ୍ଚାଏ । ତେଣୁ ପ୍ରତ୍ୟେକ ଆବଶ୍ୟକତାର ନିଶ୍ଚୟ ଚରମ ଲକ୍ଷ୍ୟ ଅଛି । ଉଦାହରଣସ୍ୱରୂପ ଭୋକ ହେଲେ ଦରକାର ହେଉଥିବା ଖାଦ୍ୟ ଭିତରେ ଭାତ, ରୁଟି, ମାଂସ ଆଦି

ପୃଥକ୍ ପୃଥକ୍ ଖାଦ୍ୟ ଖାଇପାରେ । ସେହିପରି ଶୋଷ ହେଲେ କେହି କେହି ପାଣି ପିଇପାରନ୍ତି । କେହି କେହି ସରବତ, ତୋରାଣି ବା ଫଳରସ ପିଇପାରନ୍ତି । ମଣିଷ ଯେତେବେଳେ ନିର୍ଜନତା ଅନୁଭବ କରେ ସେତେବେଳେ ସେ ବନ୍ଧୁ ଖୋଜେ । ତେଣୁ ଖାଦ୍ୟ ଖାଇବା, ପାଣି ପିଇବା, ବନ୍ଧୁ ଲାଭ କରିବା ଏକ ଏକ ଚରମ ଲକ୍ଷ୍ୟ । ଯେଉଁ ବ୍ୟକ୍ତି ବା ବସ୍ତୁ ଦ୍ୱାରା ମଣିଷର ଚରମଲକ୍ଷ୍ୟ ସାଧିତ ହୁଏ ତାହା ହୁଏ ପ୍ରୋତ୍ସାହକ (Incentive) । ଉପରୋକ୍ତ ଖାଦ୍ୟ, ପାନୀୟ ଓ ବନ୍ଧୁତ୍ୱ ଏକ ପ୍ରୋତ୍ସାହକର ଅନ୍ତର୍ଭୁକ୍ତ ।

**ଆବଶ୍ୟକତାର ବର୍ଗ—**

ବ୍ୟକ୍ତିର ଆବଶ୍ୟକତାକୁ ସାଧାରଣତଃ ଦୁଇଭାଗରେ ବିଭକ୍ତ କରି-ଯାଇଅଛି । ସେ ଦୁଇଟି ହେଲା ପ୍ରାଥମିକ ଆବଶ୍ୟକତା (Primary Needs) ଓ ସାମାଜିକ ଆବଶ୍ୟକତା (Social Needs) ।

(୧) ପ୍ରାଥମିକ ଆବଶ୍ୟକତା –

ପ୍ରାଥମିକ ଆବଶ୍ୟକତାକୁ କେହି କେହି ଶାରୀରିକ ଆବଶ୍ୟକତା ମଧ୍ୟ କହିଥାଆନ୍ତି କାରଣ ପ୍ରାଥମିକ ଆବଶ୍ୟକତା ଅନ୍ତର୍ଭୁକ୍ତ ବସ୍ତୁ ଶରୀରର ଗଠନ ଓ ବର୍ଦ୍ଧନ ପାଇଁ ମଧ୍ୟ ଦରକାର ହୁଏ । ଆବଶ୍ୟକୀୟ ବସ୍ତୁମାନଙ୍କ ଭିତରେ ଖାଦ୍ୟ, ପାନୀୟ, ବାୟୁ, ଶ୍ରମ ଓ ବିଶ୍ରାମ, ଯୌନମିଳନ ଆଦି ଅନ୍ତର୍ଭୁକ୍ତ । ଏ ପ୍ରକାର ଶାରୀରିକ ସ୍ପୃହା କେବଳ ଏକ ପୁରୁଷ (Generation) ପାଇଁ ଦରକାର ନହୋଇ ସମସ୍ତ ପୁରୁଷ ପାଇଁ ଦରକାର ହୁଏ । ଅର୍ଥାତ୍ ତାହା ମୋ ପାଇଁ ଯେତିକି ଦରକାର ମୋର ବାପ ମାଆ, ଜେଜେବାପା, ଜେଜମାଆ ଏବଂ ପୁଅ, ଝିଅ, ନାତି ନାତୁଣୀଙ୍କ ପାଇଁ ମଧ୍ୟ ସେହିପରି ଦରକାର ହୁଏ ।

(କ) ଖାଦ୍ୟ—ପ୍ରାଥମିକ ସ୍ପୃହାମାନଙ୍କ ଭିତରୁ ଗୋଟିଏ ହେଲା ଖାଦ୍ୟ । ଖାଦ୍ୟ ନ ଖାଇଲେ କୌଣସି ପ୍ରାଣୀ ବଞ୍ଚିପାରିବ ନାହିଁ । ତେଣେ-

ବେଳେ ପ୍ରଶ୍ନଉଠେ ମଣିଷ ଖାଦ୍ୟ ନ ଖାଇ୍ଲ ବଞ୍ଚି ରୁ ନପର ? ବିଭିନ୍ନ କାରଣ ନେଇ ମହାତ୍ମା ଗାନ୍ଧୀ, ସନ୍ଥ ଫତେ ସିଂହ, ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଅନଶନ କରି ଦୀର୍ଘଦିନଧରି ଖାଦ୍ୟ ନ ଖାଇ ରହିପାରିଲେ । ଏହି ସବୁ କେତେକ ବ୍ୟକ୍ତିବିଶେଷଙ୍କ କଥା ସ୍ଵତନ୍ତ୍ର; କିନ୍ତୁ ସାଧାରଣ ଦୃଷ୍ଟିକୋଣରୁ ଲକ୍ଷ୍ୟ କଲେ ଜଣାଯାଏ ଯେ ଖାଦ୍ୟ ବିନା ମଣିଷ ଜୀବନ ଧାରଣ କରି ପାରିବ ନାହିଁ । ଅବଶ୍ୟ ଖାଦ୍ୟର ପ୍ରକାରଭେଦ କଥା ସ୍ୱୀକାର କରାଯାଇ-ପାରେ, ଅର୍ଥାତ୍ ଉତ୍ତରଭାରତର ଲୋକେ ଯେପରି ଖାଦ୍ୟ ଖାଆନ୍ତି ଦକ୍ଷିଣ-ଭାରତର ଲୋକେ ସେପରି ଖାଦ୍ୟ ଖାଆନ୍ତିନାହିଁ । ସେହିପରି ଇଂଲଣ୍ଡ, ଆମେରିକାର ଲୋକମାନେ ଯେପରି ଖାଦ୍ୟ ଖାଆନ୍ତି, ଚୀନ, ଜାପାନ ବା ଭାରତର ଲୋକମାନେ ସେପରି ଖାଦ୍ୟ ଖାଆନ୍ତିନାହିଁ ।

ପୁଷ୍ଟି ଓ ସୁସ୍ଥ ଶରୀର ଗଠନ ପାଇଁ ମଣିଷ ଖାଦ୍ୟ ସହିତ ପ୍ରୋଟିନ୍, ଭିଟାମିନ, ଫ୍ୟାଟ୍‌ସ୍, କାର୍ବୋହାଇଡ୍ରେଟ୍ ଏବଂ ଲୌହ ଓ ଲବଣ ଜାତୀୟ କେତେକ ଖାଦ୍ୟ ଦରକାର କରେ । ଏହାଦ୍ୱାରା ଶରୀରର ଗଠନ ପରିପୁଷ୍ଟି ହେବା ସଙ୍ଗେ ସଙ୍ଗେ ଶକ୍ତି ସଞ୍ଚାଳିତ ହୁଏ । ଥରେ ଖାଦ୍ୟ ଖାଇବା ପରେ ଯଦି ସେହି ଖାଦ୍ୟ ଅଖଣ୍ଡ ଅବସ୍ଥାରେ ଦେହ ଭିତରେ ରହୁଥାଆନ୍ତା ତା'ହେଲେ ମଣିଷ ବାରମ୍ବାର ଖାଇବାକୁ ଇଚ୍ଛା ପ୍ରକାଶ କରନ୍ତା ନାହିଁ; କିନ୍ତୁ ଖାଇଥିବା ଖାଦ୍ୟ କେତେଘଣ୍ଟା ପରେ ଜୀର୍ଣ୍ଣ ହୋଇଯାଏ । ଅବଶ୍ୟ ଖାଦ୍ୟର ପ୍ରକାରଭେଦ ଓ ମଣିଷର ବୟସର ତାରତମ୍ୟ ଦେଇ ତାହା ଜୀର୍ଣ୍ଣ ହେବାରେ ବ୍ୟତିକ୍ରମ ଦେଖାଯାଏ । ତେବେ ଯେକୌଣସି ଖାଦ୍ୟ ହେଉନା କାହିଁକି ତାହା କେତେ ଘଣ୍ଟା ପରେ ନିଶ୍ଚୟ ଜୀର୍ଣ୍ଣ ହୋଇଯାଏ । ଖାଦ୍ୟରେ ଥିବା ଦରକାରୀ ପଦାର୍ଥ ରକ୍ତହୋଇ ଦେହରେ ମିଶିଯାଏ ଏବଂ ଅଦରକାରୀ ପଦାର୍ଥ ମଳ ମୂତ୍ର ଓ ଝାଳ ଆକାରରେ ଦେହ ଭିତରୁ ବାହାରକୁ ଚାଲିଆସେ । ତେଣୁ ଖାଦ୍ୟ ଗ୍ରହଣ କରିବା ଏବଂ ମଳ ମୂତ୍ର ତ୍ୟାଗ କରିବା ଆଦି ତାର ଆନୁସଙ୍ଗିକ କର୍ମ ପ୍ରାଥମିକ ବୃତ୍ତିଦ୍ୱାରା ଅନ୍ତର୍ଭୁକ୍ତ । ସମୟେ ସମୟେ ଶରୀର ଅସୁସ୍ଥ ହେଲେ ମଣିଷ ଖାଇବାକୁ

ଇଚ୍ଛାପ୍ରକାଶ କରେ ନାହିଁ । କିନ୍ତୁ ଅନ୍ୟାନ୍ୟ ସମସ୍ତରେ ସେ ବଂଶ ପରମ୍ପରା କ୍ରମେ ଖାଦ୍ୟ ଖାଇଥାଏ ।

(ଖ) ପାନୀୟ—ଖାଦ୍ୟପରି ପାନୀୟ ମଧ୍ୟ ମଣିଷର ଏକ ଅପରିହାର୍ଯ୍ୟ ପଦାର୍ଥ । ଯେତେବେଳେ ଆମକୁ ଶୋଷ ହୁଏ ସେତେବେଳେ ଓଠ ଶୁଖିଯାଏ, ତଣ୍ଟି ଓ ଓଠ ଅଠା ହୋଇଯାଏ । ଆମେ ସେତେବେଳେ ପିଇବାପାଇଁ କିଛି ପାନୀୟ ଦରକାର କରୁ । ସାଧାରଣତଃ ପାଣିକୁ ଲୋକମାନେ ପାନୀୟ ରୂପେ ବ୍ୟବହାର କରନ୍ତି । ତା' ବ୍ୟତୀତ ଫଳରସ, ମଦ ଏବଂ ଚିନି, ମିଶ୍ରି କିମ୍ବା ଫଳରସ ମିଶ୍ରିତ ସରବତକୁ ଲୋକମାନେ ପାନୀୟ ରୂପେ ବ୍ୟବହାର କରନ୍ତି । ପାଣି ପିଇବାଦ୍ୱାରା ଆମ ଦେହରେ ଜଳୀୟ ଅଂଶ ପ୍ରବେଶ କରେ । ତାହା ଦେହକୁ ଥଣ୍ଡା ରଖିବା ସଙ୍ଗେ ସଙ୍ଗେ ଜଳରେ ଥିବା ଲବଣ ଜାତୀୟ ପଦାର୍ଥ, ଭିଟାମିନ, ବିଭିନ୍ନ ବାଷ୍ପ ଖାଦ୍ୟକୁ ହଜମ କରିବାରେ ସାହାଯ୍ୟ କରେ ଏବଂ ଅନ୍ୟାନ୍ୟ ଦରକାରୀ ପଦାର୍ଥ ରକ୍ତରେ ଯାଇ ମିଶିଯାଏ । ଅଦରକାରୀ ଜଳୀୟ ଅଂଶଗୁଡ଼ିକ ଝାଳ ଓ ମୂତ୍ର ଆକାରରେ ଦେହ ଭିତରୁ ବାହାରିକୁ ଚାଲିଯାଏ । ତେଣୁ ପାଣି ପିଇବା ଯେପରି ମଣିଷର ଏକ ପ୍ରାଥମିକ ଆବଶ୍ୟକତା, ଅଦରକାରୀ ଜଳୀୟ ଅଂଶକୁ ବାହାରକୁ ବାହାର କରିବା ମଧ୍ୟ ସେହିପରି ଏକ ପ୍ରାଥମିକ ଆବଶ୍ୟକତାର ଅନ୍ତର୍ଭୁକ୍ତ ।

(ଗ) ପବନ—ଖାଦ୍ୟ ଓ ପାନୀୟ ଅପେକ୍ଷା ପବନର ଆବଶ୍ୟକତା ସବୁଠାରୁ ବେଶି; କାରଣ ନିଃଶ୍ୱାସ, ପ୍ରଶ୍ୱାସରେ ପବନ ଯଦି ଦେହ ଭିତରକୁ ଯିବାଆସିବା କରୁନଥାନ୍ତା, ତା'ହେଲେ ମଣିଷ ଖୁବ୍ କମ୍ ସମୟ ବଞ୍ଚି ରହନ୍ତା । ଅବଶ୍ୟ ଯୋଗ, ପ୍ରାଣାୟାମ କରି ମଣିଷ ଅଭ୍ୟାସ ବଳରେ କେତେଘଣ୍ଟା ପାଇଁ ନିଃଶ୍ୱାସ ପ୍ରଶ୍ୱାସରେ ପବନ ବ୍ୟବହାର ନକରି ରହିପାରେ; କିନ୍ତୁ ତାହା ମଣିଷର ଏକ ସାଧାରଣ ଧର୍ମ ନୁହେଁ ।

ମଣିଷ ଦେହ ଭିତରକୁ ଯେଉଁ ପବନ ଯାଏ ସେଥିରେ ଅମ୍ଳଜାନ, ଅଙ୍ଗାରକାମ୍ଳ ଆଦି କେତେ ପ୍ରକାର ମୌଳିକ ବାଷ୍ପ ମିଶି ରହିଥାଏ ।

ବିଭିନ୍ନ ପ୍ରକାର ମୌଳିକ ବାଷ୍ପ ଶରୀରର ବିଭିନ୍ନ କାମରେ ଲାଗେ । ସେଥି-ମଧ୍ୟରୁ ଅମ୍ଳଜାନ ଦେହ ଭିତରକୁ ଯାଇ ରକ୍ତରେ ମିଶିଯାଏ ଏବଂ ତାହା ଖାଦ୍ୟ ଜୀର୍ଣ୍ଣକରିବା, ଶରୀରର ଉତ୍ତାପ ରକ୍ଷାକରିବାରେ ସାହାଯ୍ୟ କରେ । ପ୍ରଶ୍ୱାସରେ ଯେଉଁ ପବନ ଯାଏ ତାହା ବିଶୁଦ୍ଧ ହୋଇଥାଏ ଏବଂ ନିଃଶ୍ୱାସରେ ଦେହଭିତରେ ସମସ୍ତ ଅଙ୍ଗାରକାମ୍ଳ ବାଷ୍ପ ବାହାରକୁ ବାହାରି-ଆସେ; ଯା'ଫଳରେ ଶରୀର ସୁସ୍ଥ ରହେ ।

(ଘ) ଶ୍ରମ ଓ ବିଶ୍ରାମ—କଥାରେ କହନ୍ତି 'ବସି ଖାଇଲେ ନଇ-ବାଲି ସରେ ।' କାମ ନ କଲେ ଖାଇବାକୁ ମିଳେନାହିଁ । ଜଣେ ମଣିଷ ନିଶ୍ଚୟ କିଛି ନା କିଛି କାମ କଲେ ତା'ପାଇଁ ଖାଦ୍ୟ ସଂଗ୍ରହ କରିପାରିବ । ସେ କାମ ଶାରୀରିକ ବା ମାନସିକ ହୋଇପାରେ । କେବଳ 'ଯେ ଖାଦ୍ୟ ସଂଗ୍ରହ କରିବା ପାଇଁ ଜଣେ ଲୋକ କାମ କରିବ ତା' ନୁହେଁ, କାମକରିବା ହେଉଛି ତାର ଏକ ସ୍ୱାଭାବିକ ପ୍ରବୃତ୍ତି । ଯଦି ସେ କିଛି କାମ ନକରେ ତାର ଶରୀରର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ଅକାମୀ ହୋଇଯାଏ । ହାତ ବା ଗୋଡ଼ରେ ଯଦି ପ୍ଲାଷ୍ଟର୍ କରାଯାଇଥାଏ, କିଛିଦିନ ପରେ ପ୍ଲାଷ୍ଟର ବାହାର କଲେ ମଧ୍ୟ ସେହି ଅଙ୍ଗ ଚଳପ୍ରଚଳ ହୋଇପାରେ ନାହିଁ । ତାର କାରଣ ବ୍ୟବହାର ନ ହେବା ଫଳରେ ତାହା ଏକପ୍ରକାର ଶକ୍ତିବିହୀନ ହୋଇଯାଏ । ତେଣୁ ଏକପକ୍ଷରେ ପରିପୂର୍ଣ୍ଣ ଓ ସୁସ୍ଥ ଶରୀର ଗଠନ ପାଇଁ ଶ୍ରମ ନିହାତି ଦରକାର ଏବଂ ଅନ୍ୟ ପକ୍ଷରେ ଏକ ସୁସ୍ଥ ମଣିଷ କୌଣସି ପ୍ରକାର ଶ୍ରମ ନକରି ବସି ରହିପାରେନାହିଁ । ସେ ଦୃଷ୍ଟିରୁ ପରିଶ୍ରମ କରିବାର ଅଭିଳାଷ ସମସ୍ତଙ୍କର ଅଛି । ଏହା ଶିଶୁମାନଙ୍କଠାରେ ଅତ୍ୟଧିକ ପରିମାଣରେ ଦେଖାଯାଏ । କ୍ରମେ କ୍ରମେ ଶିଶୁ ବଡ଼ ହେବା ସଙ୍ଗେ ସଙ୍ଗେ ତାର ଶ୍ରମ କରିବାର ଅଭିଳାଷ ଦୃଢ଼ ହୁଏ । ଯଦି ତାକୁ ସତ୍‌ମାର୍ଗରେ ପରିଚାଳିତ କରାନଯାଏ ତେବେ ତାର ସମସ୍ତ କର୍ମ ଅସତ୍‌ପଥଗାମୀ ହୋଇ ସେ ଏକ ଅମଣିଷ ହୋଇଯାଏ ।

କୌଣସି ପ୍ରକାର କାମକରିବା ଫଳରେ ମଣିଷର ଅଙ୍ଗପ୍ରତ୍ୟଙ୍ଗ କ୍ରମଶଃ

ଅବଶ ହୋଇଯାଏ । କାରଣ ଶ୍ରମକରିବା ଦ୍ୱାରା ଶାରୀରିକ ଶକ୍ତି କ୍ଷୟହୁଏ । ତେଣୁ ସମସ୍ତ ଶକ୍ତି ପୁଣି ଅଙ୍ଗପ୍ରତ୍ୟଙ୍ଗକୁ ଆସିବା ପାଇଁ କିଛି ସମୟ ବିଶ୍ରାମ ଦରକାର । ଶୋଇବା ଫଳରେ ମଣିଷ ପୂର୍ଣ୍ଣ ବିଶ୍ରାମ ପାଇଥାଏ । ଶୋଇବା ବେଳେ ମଣିଷ ଗାଢ଼ ନିଦରେ ଶୋଇବା ଉଚିତ; ତା'ଫଳରେ ନିଦରୁ ଉଠିଲେ ସେ ଖୁବ୍ ସତେଜ ଓ ସୁସ୍ଥ ହୋଇପାରିବ । ଅନେକ ସମୟରେ ଦେଖାଯାଇଛି ଯେ ଗାଢ଼ ନିଦରେ-ନ ଶୋଇ ପରୀକ୍ଷା ସମୟରେ ଛାତ୍ରଛାତ୍ରୀମାନେ ଦୁର୍ବଳ ହୋଇଯାଆନ୍ତି । ଅନିଦ୍ରା ହେତୁ ମଧ୍ୟ ଲୋକମାନେ ମାନସିକ କ୍ଳାନ୍ତି ଅନୁଭବ କରନ୍ତି ।

ପରିଶ୍ରମକରି କେବଳ ଶୋଇପଡ଼ିଲେ ଯେ ବିଶ୍ରାମ ମିଳିଥାଏ; ତା' ନୁହେଁ । କେତେକ ଲୋକ କେବଳ ବିକୁଳିଗଛମୂଳ ପଙ୍ଖାତଳେ ବସିଗଲେ ବିଶ୍ରାମ ପାଇଥାଆନ୍ତି । ଅନେକ ସମୟରେ ବିଶ୍ରାମ ଶ୍ରମ ଉପରେ ନିର୍ଭର-କରେ । ଅର୍ଥାତ୍ ଜଣେ ଲୋକ ଯଦି ଶାରୀରିକ ଶ୍ରମ କରୁଛି, ସେ ତା'ପରେ ମାନସିକ ଶ୍ରମ କଲେ ତାକୁ ବିଶ୍ରାମ ମିଳିଥାଏ । କଳକାରଖାନାରେ କାମ କରୁଥିବା ଶ୍ରମିକ ବା କୃଷିକ୍ଷେତ୍ରରେ କାମ କରୁଥିବା କୃଷକ ସନ୍ଧ୍ୟାବେଳେ କାମରୁ ଫେରି କୌଣସି ଗ୍ରନ୍ଥ, ପୁରାଣ ବା ଗଳ୍ପବହି ପଢ଼ିଲେ ଏବଂ ଶୁଣିଲେ ତାର ଶାରୀରିକ କ୍ଳାନ୍ତି ଲାଘବ ହୋଇଥାଏ । ଅନ୍ୟ ପକ୍ଷରେ ବୁଦ୍ଧିଜୀବୀ ଏବଂ ସ୍କୁଲ କଲେଜର ଛାତ୍ରମାନେ ମାନସିକ ଶ୍ରମ କରିସାରିବା ପରେ ଫୁଟ୍‌ବଲ, କ୍ରିକେଟ୍, ଟେନିସ୍ ଆଦି ବିଭିନ୍ନ ପ୍ରକାର ଖେଳ ଖେଳିବାକୁ ଭଲପାଆନ୍ତି । ତାଦ୍ୱାରା ସେମାନଙ୍କର ମାନସିକ ଶ୍ରମଜନିତ କ୍ଳାନ୍ତି ଦୂର ହୋଇଥାଏ । ମନସ୍ତତ୍ତ୍ୱବିତ୍‌ମାନେ ମତଦିଅନ୍ତି ଯେ, ଯଦି ସ୍କୁଲ୍ କଲେଜର ଦୈନନ୍ଦିନ ପାଠକ୍ରମରେ ପୂର୍ବାହ୍ଣରେ ଇତିହାସ, ସାହିତ୍ୟ, ନଗରବିଜ୍ଞାନ ଆଦି ପଢ଼ାଯାଇ ଅପରାହ୍ଣରେ ଗଣିତ, ଭୂଗୋଳ, ବିଜ୍ଞାନ ଆଦି ପଢ଼ାଯାଆନ୍ତା ତା'ହେଲେ ପିଲମାନଙ୍କର ପଢ଼ାରେ ମନ ଲାଗନ୍ତା । କାରଣ ଗଣିତ, ଭୂଗୋଳ, ବିଜ୍ଞାନ ଆଦି ବିଷୟମାନଙ୍କରେ ମାନସିକ ଓ ଶାରୀରିକ ଶ୍ରମ ଦରକାର ହୋଇଥାଏ ।

(ଙ) ଯୌନ-ଲାଳସା—ଯୌନ-ଲାଳସା ପ୍ରତ୍ୟେକ ପ୍ରାଣୀ ନିକଟରେ ଦେଖାଯାଏ । ସେଥିପାଇଁ ଯୌନ-ମିଳନ ସେମାନଙ୍କର ଏକ ଅପରିହାର୍ଯ୍ୟ କର୍ତ୍ତବ୍ୟ ହୋଇଥାଏ । ତାହାଦ୍ୱାରା ବଂଶବୃଦ୍ଧି କରିବାର ଅଭିଳାଷ ମଧ୍ୟ ପୂରଣ ହୁଏ । ମନସ୍ତାତ୍ତ୍ୱିକ ସିଗମଣ୍ଡ ଫ୍ରଏଡ଼ଙ୍କ ମତରେ ଶିଶୁ ଜନ୍ମଲାଭ କରିବା ପରେ ପରେ ମନଭିତରେ ମିଳନର ଆଶାପୋଷଣ କରିଥାଏ । ସେଥିପାଇଁ ଗୋଟିଏ ବାଳକ ମାଆ, ଭଉଣୀ, ଖୁଡ଼ୀଙ୍କ ନିକଟରେ ଅଧିକ ସମୟ କଟାଇବାକୁ ଇଚ୍ଛା କରିଥାଏ ଏବଂ ଗୋଟିଏ ବାଳିକା ବାପା, ଭାଇ, କକା ଆଦିଙ୍କ ପାଖରେ ବେଶି ସମୟ ରହିଥାଏ । ଗ୍ରୀକ୍ ପୁରାଣରେ ବର୍ଣ୍ଣିତ ଓଡ଼ିପସ୍ ଚରିତ୍ରକୁ ଦୃଷ୍ଟାନ୍ତ ଧାରଣା କରି ବାଳକମାନଙ୍କର ଏଭଳି ମନୋଭାବକୁ ଓଡ଼ିପସ୍ କମ୍ପ୍ଲେକ୍ସ (Oedipus Complex) ବୋଲି ସେ କହିଛନ୍ତି ।

କେବଳ ଶିଶୁ ଅବସ୍ଥାରେ ନୁହେଁ, କିଶୋର ଓ ଯୌବନ ଅବସ୍ଥାରେ ମଧ୍ୟ ଯୌନ-ଲାଳସା ମନୁଷ୍ୟ ଓ ପଶୁପକ୍ଷୀଙ୍କ ମଧ୍ୟରେ ଦେଖାଯାଇଥାଏ । ବାଳକ ବାଳିକାମାନେ ସ୍କୁଲ କଲେଜରେ ପଢ଼ିବାବେଳେ ବାଳକମାନେ ବାଳିକାସାଙ୍ଗ ଓ ବାଳିକାମାନେ ବାଳକସାଙ୍ଗମାନଙ୍କ ସହିତ ଖେଳିବା, ଗପକରିବାକୁ ଖୁବ୍ ଭଲପାଆନ୍ତି । ଏହାଦ୍ୱାରା ସେମାନେ ମାନସିକ ତୃପ୍ତି ଲାଭକରନ୍ତି; କିନ୍ତୁ କେତେକ ଜାଗାରେ ବାଳକ ବାଳିକାମାନଙ୍କର ଏପରି ମିଳାମିଶାକୁ ସମାଜ ବାରଣ କରିଥାଏ । ତେଣୁ କେବଳ ସମଲିଙ୍ଗୀ ପିଲାଙ୍କ ଭିତରେ ଖେଳାବୁଲା ଓ ଖୁସିଗପ ହୁଏ । ଅବଶ୍ୟ ସ୍ଥଳବିଶେଷରେ କେହି ବାଳକ ବାଳିକା ସାମାଜିକ ନିୟମ ଲଙ୍ଘନକରି କିମ୍ବା ସମାଜଠାରୁ ଦୂରରେ ରହି ପରସ୍ପର ସହିତ ମିଳାମିଶା କରିଥାଆନ୍ତି ।

ବୟସ ହୋଇଗଲେ ଅର୍ଥାତ୍ ବାଳକ ବାଳିକାମାନଙ୍କୁ ୧୫।୧୬ ବର୍ଷ ବା ତହିଁରୁ ଅଧିକ ହେଲେ ସେମାନଙ୍କୁ ବିବାହ କରିବାର ସୁବିଧା ହୁଆଯାଏ ଏବଂ ମିଳନ ପାଇଁ ଥିବା କଟକଣା ଉଠିଯାଏ । ବିବାହ ପରେ ତାଙ୍କରିକ

ଓ ମାନସିକ ମିଳନର ପରିପୂର୍ଣ୍ଣତା ଆଣେ ଓ ଯୌନ-ଲାଳସା ତୃପ୍ତି ଲାଭ କରେ ।

(ଚ) ବାତ୍ସଲ୍ୟ—ପ୍ରସବ କରିବାର ସମୟ ଆସିଗଲେ ପଶୁ, ପକ୍ଷୀ ଓ ମଣିଷ ଆଦି ସ୍ତନ୍ୟପାୟୀ ଜାତିର ସ୍ତ୍ରୀମାନଙ୍କ ବ୍ୟବହାରରେ ଏକ ପରିବର୍ତ୍ତନ ଦେଖାଦିଏ । ପଶୁ, ପକ୍ଷୀମାନେ ବସାନିର୍ମାଣ କରିବାରେ ବ୍ୟସ୍ତ ରହନ୍ତି । ଛୁଆମାନଙ୍କୁ ବସା ଭିତରେ ଖୁବ୍ ଯତ୍ନରେ ରଖି ସେମାନଙ୍କୁ ଲାଳନପାଳନ କରିବାର ଆଗ୍ରହ ପ୍ରକାଶକରନ୍ତି । ପରୀକ୍ଷାକରି ଦେଖା-ଯାଇଛି ଯେ, ଏକ ମୂଷା ଦେହରେ ପ୍ରୋଲକ୍‌ଟିନ୍ (Prolactin) ନାମକ ଏକପ୍ରକାର ହରମୋନ୍‌ର ଆବିର୍ଭାବ ହେଲେ ସେମାନଙ୍କ ମନରେ ବାତ୍ସଲ୍ୟ ଜାତ ହୁଏ । ଏପରିକି ଉକ୍ତ ହରମୋନ୍‌ର ଆବିର୍ଭାବ ଫଳରେ ପୁରୁଷ ସଂସ୍ପର୍ଶରେ ଆସି ନଥିବା ମୂଷା ମନରେ ମଧ୍ୟ ବାତ୍ସଲ୍ୟ ଦେଖାଯାଏ ।

ପଶୁ, ପକ୍ଷୀ ବା ମଣିଷ ହୁଅନ୍ତୁ, ପ୍ରତ୍ୟେକ ମାଆ ମନରେ ବାତ୍ସଲ୍ୟଭାବ ଥାଏ । ଏପରି ମନୋଭାବକୁ କେହୁ କେହୁବ ଦେଖି ବା ଶିଖି ବଢ଼ାଏନାହିଁ । ମଣିଷ ସମାଜରେ ଶିଶୁଟିକୁ ପାଳିବାର ପ୍ରଣାଳୀ ଶିକ୍ଷା ଦିଆଯାଇପାରେ ଏବଂ ଏହା ସ୍ଥାନ ବିଶେଷରେ ଫରକ ହୋଇପାରେ; ମାତ୍ର ବାତ୍ସଲ୍ୟର ଅଭିଳାଷ ଓ ଆନନ୍ଦ କେହୁ କେବେ ଶିଖାଏନାହିଁ । ସ୍ତନ୍ୟପାୟୀ ପ୍ରାଣୀ-ମାନଙ୍କ ଭିତରେ ଶିଶୁଟିକୁ କୋଳରେ ଧରି ସ୍ତନ୍ୟପାନ କରାଇବାର ଅଭିଳାଷ ସାରା ପୃଥିବୀରେ ପରିଲକ୍ଷିତ ହୁଏ । ସେଥିପାଇଁ ବାତ୍ସଲ୍ୟ ଏକ ପ୍ରାଥମିକ ବା ଜନ୍ମଗତ ଆବଶ୍ୟକତା ବୋଲି ଗ୍ରହଣ କରାଯାଇଥାଏ ।

(୨) ସାମାଜିକ ଆବଶ୍ୟକତା—

ମନ ଭିତରେ ଥିବା ଦ୍ୱିତୀୟ ପ୍ରକାର ଆବଶ୍ୟକତାକୁ ମନସ୍ତାତ୍ତ୍ୱିକମାନେ ସାମାଜିକ ମୂଲ୍ୟବୋଧର ଅନ୍ତର୍ଭୁକ୍ତ କରିଥାଆନ୍ତି । କାରଣ ବନ୍ଧୁ, କୁଟୁମ୍ବ ଓ ପରିଜନଙ୍କ ସହିତ ସମାଜରେ ଚଳିବାକୁ ହେଲେ ସେହିପରି କେତେକ

ଆବଶ୍ୟକତା ମଣିଷର ଥାଏ । ମଣିଷ ଏକ ସାମାଜିକ ଜୀବ ହୋଇଥିବା ହେତୁ ଏ ପ୍ରକାର ସ୍ପୃହା ମଣିଷ ନିକଟରେ ଦେଖାଯାଏ । ଏହା ମଧ୍ୟ ପଶୁ-ପକ୍ଷୀଙ୍କ ସମାଜରେ ଦେଖାଯାଇଥାଏ ।

(କ) ପ୍ରଭୁତ୍ୱ (Mastery Motive)—ସମାଜରେ କେତେକ ଲୋକ ଅଛନ୍ତି, ଯେଉଁମାନେ କି ନିଜର ବଳ ଦେଖାଇ ପ୍ରଭୁତ୍ୱ ବିସ୍ତାର କରିବାକୁ ଚାହାନ୍ତି । ସେଥିପାଇଁ ସବଳ ଓ ଦୁର୍ବଳ ମଧ୍ୟରେ ଯୁଗ-ଯୁଗଧରି କଳହ ଲାଗିଆସିଛି । ଦୁର୍ବଳ ଉପରେ ସବଳର ପ୍ରଭୁତ୍ୱ ବିସ୍ତାର କେବଳ ମଣିଷର ସମାଜରେ ନୁହେଁ, ପଶୁ ପକ୍ଷୀଙ୍କ ଭିତରେ ମଧ୍ୟ ଥାଏ । ଇତିହାସ ପଢ଼ିଲେ ଜଣାଯାଏ ଯେ, କୌଣସି ରାଜା ବା ସମ୍ରାଟଙ୍କର ରାଜ୍ୟବିସ୍ତାର ମୂଳରେ ପ୍ରଭୁତ୍ୱବିସ୍ତାର ଏବଂ ଅନ୍ୟକୁ ନିଜ ଅଧୀନରେ ବଶ କରି ରଖିବାର ଇଚ୍ଛା ଥାଏ । ଗାଁଗହଳି ବା ସହର ବଜାରରେ ଦେଖାଯାଉଥିବା ଷଣ୍ଢ ଲଢ଼େଇ, କୁକୁର ଲଢ଼େଇ ବା କୁକୁଡ଼ା ଲଢ଼େଇ ପଛରେ ଗୋଟିଏ ପକ୍ଷ ବଳୀୟାନ୍ ହେବାର ଅଭିଳାଷ ନିହିତ ଥାଏ ଏବଂ ଅପରପକ୍ଷ ଦୁର୍ବଳ ହେଲେ ପରାଧୀନତା ସ୍ୱୀକାର କରିବାକୁ ବାଧ୍ୟ ହୁଏ ।

(ଖ) ଅନୁମୋଦନ (Social Approval)—ଅନେକ ଲୋକ ଚାହାଁନ୍ତି ଯେ ସେମାନଙ୍କର ସମସ୍ତ କାର୍ଯ୍ୟକଳାପକୁ ସମାଜରେ ଲୋକମାନେ ଶ୍ରେଷ୍ଠ ବୋଲି ବିବେଚନା କରନ୍ତୁ । ସେମାନଙ୍କୁ ଭଲଲୋକ ଭାବରେ ସ୍ୱୀକାର କରନ୍ତୁ । ଶିଶୁଟିଏ ଯେପରି ତାର ଭଲ କାମ ପାଇଁ ବାପା ମାଆ, ଶିକ୍ଷକଙ୍କଠାରୁ ଅନୁମୋଦନ ଆଶା କରେ ସେପରି ଲୋକମାନେ ସେମାନଙ୍କର ବନ୍ଧୁ, ପରିବାର ଓ ସମାଜର ଅନ୍ୟମାନଙ୍କଠାରୁ ଅନୁମୋଦନ ଆଶା କରନ୍ତି । ଅବଶ୍ୟ ଏହା ପଛରେ ସେମାନଙ୍କର ସମ୍ମାନ ଲାଭର ଆଶା ଥାଏ । ଅନୁମୋଦନ ପାଇବାପାଇଁ କେହି କେହି ଅର୍ଥ ବ୍ୟୟ କରନ୍ତି, କେହି କେହି କୌଶଳ ବା ବଳ ଖର୍ଚ୍ଚ କରନ୍ତି, ଆଉ କେତେକ ଲୋକ ନିଜର ଅଧ୍ୟବସାୟ ବଳରେ ଅନୁମୋଦନ ଲାଭ କରିଥାଆନ୍ତି । ଅନୁମୋଦନ ଲାଭ କରିବା ପାଇଁ ଶିକ୍ଷା ଓ ଅର୍ଥ ଯେପରି ଏକ ଏକ ମାଧ୍ୟମ, ରାଜନୀତି ସେହିପରି

ଏକ ମାଧ୍ୟମ । ସାଧାରଣ ନାଗରିକ, ସ୍କୁଲ କଲେଜର ଛାତ୍ରଛାତ୍ରୀ, କଲ-କାରଖାନାର ଶ୍ରମିକ ଓ ମାଲିକ, କୃଷି ମୂଲିଆ ଆଦି ସମାଜର ପ୍ରତ୍ୟେକ ଶ୍ରେଣୀର ବ୍ୟକ୍ତି ସ୍ୱଭାବତଃ ଭାବରେ ସମାଜରେ ନିଜକୁ ପ୍ରତିଷ୍ଠା କରିବା ପାଇଁ ଇଚ୍ଛା କରନ୍ତି । ବଡ଼ ବଡ଼ ଚାକିରି କରି, ନିଜ ପାଖରେ କାର୍ ମଟର-ସାଇକେଲ, ଟେଲିଫୋନ ରଖି, ଦାମିକା ପୋଷାକ ପିନ୍ଧି ଅନେକ ଲୋକ ସମାଜରେ ନିଜର ମୂଲ୍ୟ ବଢ଼ାଇବା ପାଇଁ ଯତ୍ନବାନ୍ ହୁଅନ୍ତି ।

(ଗ) **ଦଳଗତ ମନୋଭାବ** (Gregariousness)—ଦଳବଦ୍ଧ ହୋଇ ରହିବାର ଇଚ୍ଛା ମଣିଷ ଓ ପଶୁପକ୍ଷୀଙ୍କ ଭିତରେ ଦେଖାଯାଏ । ଜଣେ ମଣିଷ ଯେତେବେଳେ ତାର ବନ୍ଧୁ ବା ପରିବାର ଭିତରେ ଥାଏ, ସେତେବେଳେ ସେ ଯଥେଷ୍ଟ ଗୌରବ ଅନୁଭବ କରେ । ସେହିପରି ସ୍କୁଲ କଲେଜର ଛାତ୍ରଛାତ୍ରୀମାନେ ଯେତେବେଳେ ତାଙ୍କ ନିଜ ଅନୁଷ୍ଠାନର ଛାତ୍ରଛାତ୍ରୀମାନଙ୍କ ସହିତ ପରିଭ୍ରମଣରେ ଯାଆନ୍ତି, ପ୍ରତିଦ୍ୱନ୍ଦ୍ୱିତା ମୂଳକ ଖେଳ, ତର୍କସଭା ଆଦିରେ ଯୋଗଦିଅନ୍ତି, ସେତେବେଳେ ସେମାନେ ଅନୁଷ୍ଠାନର ଏକ ଦଳ ହିସାବରେ ଅଧିକ ଆନନ୍ଦ ପାଇଥାଆନ୍ତି । ଅନ୍ୟ ଦୃଷ୍ଟିରୁ ଦେଖିଲେ ପ୍ରତ୍ୟେକ ବ୍ୟକ୍ତି ନିଜକୁ କୌଣସି ଦଳ, ଅନୁଷ୍ଠାନ, ରାଜ୍ୟ ବା ଦେଶରେ ଏକ ଅଙ୍ଗ ବୋଲି ଭାବିବାକୁ ଅଧିକ ପସନ୍ଦକରେ । ସମାଜ, ବନ୍ଧୁ, ପରିଜନଙ୍କଠାରୁ ଦୂରେଇ ରହିଲେ ମଣିଷ ଜୀବନରେ ଖୁବ୍ ବଡ଼ ଅଭାବ ରହିଗଲାପରି ବୋଧହୁଏ ଏବଂ ଜୀବନ ଦୁର୍ବିସହ ହୋଇଯାଏ ।

ବୈବାହିକ ଜୀବନ ଏହିପରି ଏକ ଦଳଗତ ମନୋଭାବର ପରିପ୍ରକାଶ ମାତ୍ର । ଏହାଦ୍ୱାରା ଯେ ମଣିଷର ଏକ କାମପ୍ରବୃତ୍ତି ଚରିତାର୍ଥ ହୁଏ ତା' ନୁହେଁ, ସାରା ଜୀବନପାଇଁ ସେ ଏକ ବନ୍ଧୁ ପାଇପାରେ, ନିଜର ଏକ ପରିବାର ଗଠନ କରିବାର ଅଭିଳାଷ ପୂରଣ କରେ ଏବଂ ବିବାହିତ ଦମ୍ପତି ଭିତରେ ପରସ୍ପର ନିର୍ଭରଶୀଳତାଦ୍ୱାରା ସେ ଯଥେଷ୍ଟ ଆନନ୍ଦ ପାଇପାରେ ।

(ଘ) **ନିର୍ଭରଶୀଳତା** (Dependence)—ଜନ୍ମହେବା ପରେ ଶିଶୁଟିଏ ତାର ଖାଦ୍ୟ, ପାନୀୟ ଓ ଆରାମ ପାଇବାପାଇଁ ବାପମାଆଙ୍କ

ଉପରେ ନିର୍ଭରକରେ; କିନ୍ତୁ ତାର ବୟସ ଅଧିକ ହେବା ସଙ୍ଗେ ସଙ୍ଗେ ସେ ବାପା, ମାଆ ଓ ପରିବାରର କୌଣସି ବ୍ୟକ୍ତିଙ୍କ ପାଖରେ ଅଧିକ ସମୟ କଟାଏ ନାହିଁ; ବରଂ ଖେଳାଖେଳି କରିବାପାଇଁ ତାର ସାଙ୍ଗସାଥିଙ୍କ ଉପରେ ଅଧିକ ନିର୍ଭର କରେ । ଆଜିକାଲି ମନସ୍ତତ୍ତ୍ୱବିତ୍‌ମାନେ ପରୀକ୍ଷା କରି ଦେଖିଲେଣି ଯେ ଶିଶୁର ବୟସ ଓ ବୁଦ୍ଧି ବିକାଶ ହେବା ସଙ୍ଗେ ସଙ୍ଗେ ସେ ପରମୁଖାପେକ୍ଷୀ ନ ହୋଇ ଆତ୍ମନିର୍ଭରଶୀଳ ହେବାପାଇଁ ଚେଷ୍ଟାକରୁଛି, କିନ୍ତୁ ଏ କଥା ସତ ଯେ ମଣିଷ ଯେତେ ବୟସ୍କ ବା ବୃଦ୍ଧ ହେଲେ ମଧ୍ୟ ସେ ସମାଜ ଉପରେ ନିର୍ଭର ନକରି ଚଳିପାରିବନାହିଁ । ସେ ଏକ ସାମାଜିକ ଜୀବ ହୋଇଥିବା ହେତୁ ତାର ଖାଦ୍ୟ, ପାନୀୟ, ବସ୍ତ୍ର, ଅନ୍ୟାନ୍ୟ ଆବଶ୍ୟକୀୟ ଉପକରଣ ଓ ପରିଶେଷରେ ବନ୍ଧୁତା ପାଇଁ ସେ ସମାଜ ଉପରେ ନିଶ୍ଚୟ ନିର୍ଭର କରିବ ।

## ପ୍ରବଞ୍ଚନା, ଦ୍ୱନ୍ଦ୍ୱ ଓ ହତାଶ ମନୋଭାବ—

ମାନସିକ ପ୍ରବଞ୍ଚନା ଯଦି ଏକ ଦିଗରେ ଗତି କରୁଥାଏ, ଅର୍ଥାତ୍ ଯଦି ଥରକେ ଗୋଟିଏ ମାତ୍ର ଆବଶ୍ୟକତା ମନ ଭିତରେ ସ୍ଥାନ ପାଏ, ତେବେ ତାହା ବ୍ୟକ୍ତିକୁ କୌଣସି ଅସୁବିଧାରେ ପକାଏନାହିଁ । କିନ୍ତୁ ଅନେକ ସମୟରେ ଏକାଧିକ ସ୍ପୃହା ବ୍ୟକ୍ତିକୁ ବିଭିନ୍ନ ଦିଗରେ ପ୍ରବର୍ତ୍ତିତ କରାଇବା ଫଳରେ ସେ ସମସ୍ୟାର ସମ୍ମୁଖୀନ ହୁଏ । ଏଠାରେ ଗୋଟିଏ ମାତ୍ର ଉଦାହରଣ ଦେଲେ ଯଥେଷ୍ଟ ହେବ । ଜଣେ ପିଲା ପରୀକ୍ଷାରେ ଭଲ ନମ୍ବର ରଖି ପାସ୍‌କରିବା ପରେ ଉଚ୍ଚତର ଶ୍ରେଣୀରେ ପଢ଼ିବାକୁ ଇଚ୍ଛା କରିପାରେ; କିନ୍ତୁ ତାର କେତେକ ଚାଷୋପଯୋଗୀ ଜମି ଥିବାରୁ ତାର ରକ୍ଷଣାବେକ୍ଷଣ କରିବାକୁ ବାପା କହିପାରନ୍ତି । ପରିବାରର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବା ହେତୁ ଚାକିରି କରି ଟଙ୍କା ରୋଜଗାର କରିବାକୁ ବାପାମାଆ କହିପାରନ୍ତି । ବିବାହ ଉପଯୋଗୀ ବୟସ ହୋଇଥିବା ହେତୁ ଏବଂ ବାପମାଆଙ୍କ ବାର୍ଦ୍ଧକ୍ୟ ହେତୁ ପରିବାରରେ ସୁଖଶାନ୍ତି ପାଇଁ ବିବାହ କରି ଘରସଂସାର କରିବାକୁ

ବାପମା'ଆ, ବନ୍ଧୁ ବାନ୍ଧବ ପ୍ରଭୃତି ହୋଇପାରନ୍ତି । ଏଗୁଡ଼ିକ ଭିତରୁ ପ୍ରତ୍ୟେକଟି ଗୋଟିଏ ଗୋଟିଏ ଯଥାର୍ଥ ଆବଶ୍ୟକତା; କିନ୍ତୁ ଯଦି ବ୍ୟକ୍ତି-ଙ୍କ ଆବଶ୍ୟକତା ଏକତ୍ରିତ ହୋଇ ତାହା ପାଖରେ ପହଞ୍ଚେ ଏବଂ ସ୍ଥିର ଭାବରେ ପୂରଣ କରିବାକୁ ପିଲାଟି ପ୍ରବର୍ତ୍ତିତ ହୁଏ, ସେ ସେତେବେଳେ ଦ୍ୱନ୍ଦ୍ୱର (Conflict) ସମ୍ମୁଖୀନ ହୁଏ । ପରୀକ୍ଷାକରି ଦେଖାଯାଇଛି ଯେ, ଗୋଟିଏ ଭୋକିଲା ପୁରୁଷ-ମୂଷାକୁ ଯୌନମିଳନରୁ କିଛିଦିନ ବଞ୍ଚିତ କରିବାପରେ ତାର ଖାଇବାର ଆକାଂକ୍ଷା ଓ ମିଳନର ଇଚ୍ଛା ଥାଏ । ଏକ ପାଖରେ କିଛି ଖାଦ୍ୟ ଓ ଅନ୍ୟପାଖରେ ସ୍ତ୍ରୀ-ମୂଷାକୁ ରଖି ଦେଖାଯାଇଛି ଯେ ପୁରୁଷ ମୂଷାଟି ଦ୍ୱନ୍ଦ୍ୱରେ ପଡ଼ି କେଉଁଆଡ଼କୁ ଯାଇପାରେ ନାହିଁ, ବରଂ ଗୋଟିଏ ଜାଗାରେ ନିଶ୍ଚଳ ହୋଇ ବସିଯାଏ ।

ଏକାଧିକ ସମସ୍ୟା ଭିତରୁ କୌଣସି ଗୋଟିଏ ସମସ୍ୟା ସମାଧାନ କରି ନ ପାରିଲେ, ମଣିଷ ହତାଶ (Frustrated) ହୋଇଯାଏ । ଯଦି ଜଣେ ଯୁବକ ଅନ୍ୟ ଜାତିର ବାଳିକାକୁ ବିବାହ କରିବାକୁ ଇଚ୍ଛାକରେ ଏବଂ ଏଥିରେ ସମାଜ ପ୍ରତିବନ୍ଧକ ସୃଷ୍ଟି କରେ, ଯଦି ଶିକ୍ଷିତ ବ୍ୟକ୍ତି ବହୁତ ଖୋଜିଲାପରେ ମଧ୍ୟ ଚାକିରି ପାଏନାହିଁ ଏବଂ ଯଦି ପରିବାରର ସମସ୍ତ ପ୍ରକାର ଅଭାବ ଅସୁବିଧା ଦୂର କରିବାକୁ ମଣିଷ ଅସମର୍ଥ ହୁଏ, ତେବେ ସେ ନିଜର ମାନସିକ ପ୍ରବର୍ତ୍ତନାକୁ ଯଥାର୍ଥରୂପେ କାର୍ଯ୍ୟକାରୀ କରି ନ ପାରିବା ହେତୁ ହତାଶ ହୋଇଯାଏ । ତେଣୁ ପ୍ରବର୍ତ୍ତନାର ଚରମଲକ୍ଷ୍ୟ ସାଧନାରେ ବିଫଳତା ଦେଖାଦେଲେ, ମଣିଷ ହତାଶ ହୁଏ ଏବଂ ପ୍ରବର୍ତ୍ତନାର ଗୁରୁତା ବା ଲଘୁତା ଉପରେ ଦ୍ୱନ୍ଦ୍ୱ ଓ ହତାଶରେ ଗୁରୁତା ଓ ଲଘୁତା ନିର୍ଭରକରେ ।

## ହତାଶାର ରୂପ ଓ ପ୍ରକାର—

ମଣିଷ ହତାଶ ହେଲେ ତାର ଶାରୀରିକ ଓ ମାନସିକ ଅସୁସ୍ଥି ଦେଖାଦିଏ । ଶାରୀରିକ ଅସୁସ୍ଥି ଭିତରେ ଖାଦ୍ୟ ଅଜୀର୍ଣ୍ଣ ହେବା, ରକ୍ତଚାପ

ବୃଦ୍ଧି, ହୃତ୍‌କ୍ରିୟା, ରକ୍ତସଞ୍ଚାଳନ ଓ ଶ୍ୱାସ ପ୍ରଶ୍ୱାସରେ ଅସ୍ୱାଭାବିକତା ଆଦି ବିଭିନ୍ନ ପରିବର୍ତ୍ତନ ଲକ୍ଷ୍ୟ କରିହୁଏ । ସେହିପରି ମାନସିକ ଅନୁଭୂତି ଭିତରେ ଆତ୍ମହେୟଜ୍ଞାନ ପ୍ରଧାନ । ଏହାଦ୍ୱାରା ମଣିଷ ନିଜକୁ ଖୁବ୍ ହେୟ ଓ ଘୃଣ୍ୟ ବୋଲି ମନେକରେ । ତେଣୁ ସେ ସମାଜ ବା ସାଙ୍ଗସାଥୀ ମେଳରେ ରହିବାକୁ ଇଚ୍ଛା ନକରି ଏକୁଟିଆ ସମସ୍ତ କାଟିବାକୁ ଇଚ୍ଛାକରେ । କେହି କେହି ଆତ୍ମହତ୍ୟା କରିବାକୁ ଚେଷ୍ଟା କରିଥାଆନ୍ତି । ହତାଶହେଲେ ମଣିଷ ଆତ୍ମହତ୍ୟା କରିବା ପରିବର୍ତ୍ତେ ଅନେକ ସମୟରେ ଅନ୍ୟକୁ ଆକ୍ରମଣ କରେ । ଏହାଦ୍ୱାରା ସେ ତାଙ୍କ ପ୍ରତିବନ୍ଧକୁ ଏଡ଼ାଇ ଦେବାପାଇଁ ଚେଷ୍ଟା କରିଥାଏ ।

ହତାଶ ମନୋଭାବ ମଣିଷ ପକ୍ଷରେ କ୍ଷତିକାରକ ହେଲେ ମଧ୍ୟ ତାହା ଖୁବ୍ ସୁବିଧାରେ ଦୂର କରିହୁଏ । ଏକ ସମୟରେ ଏକାଧିକ ପ୍ରବର୍ତ୍ତନା ମନଭିତରେ ସ୍ଥାନ ପାଇଲେ ସେଥିରେ ବିଚଳିତ ହୋଇ ନଯାଇ ସମସ୍ୟାର ଗୁରୁତ୍ୱ ଦୃଷ୍ଟିରୁ ଗୋଟିକ ପରେ ଗୋଟିଏ ସମସ୍ୟା ସମାଧାନ କରିବାକୁ ହୁଏ । ଉଦାହରଣ ସ୍ୱରୂପ ଜଣେ ଛାତ୍ର ସିନେମା ଦେଖିବାକୁ ଇଚ୍ଛାକରୁଛି, ପରୀକ୍ଷାଯୋଗୁଁ ପଢ଼ିବା ଦରକାର ହେଉଛି ଏବଂ ବାପାଙ୍କ ଦେହ ଖରାପ ଯୋଗୁଁ ଡାକ୍ତର ଡାକିଯିବାକୁ ପଡ଼ୁଛି । ଏହିପରି ଏକ ସମୟରେ ତିନି-ଗୋଟି ସାମାଜିକ ଆବଶ୍ୟକତା ଥିଲେ ପ୍ରଥମେ ବାପାଙ୍କପାଇଁ ଔଷଧ ଆଣି ତା'ପରେ କିଛି ସମୟ ପରୀକ୍ଷା ପାଇଁ ପଢ଼ିବାପରେ ସିନେମା ଦେଖିବାକୁ ଗଲେ ସମସ୍ୟା ଗୁଡ଼ିକର ସମାଧାନ ହୁଏ । ପ୍ରତ୍ୟେକ ମଣିଷର ଦୈନନ୍ଦିନ ଜୀବନରେ ସମସ୍ୟା ଆସିଥାଏ । ଧୈର୍ଯ୍ୟର ସହିତ ସମସ୍ୟାର ସମାଧାନ କଲେ ମଣିଷର ମହାନତା ପରିସ୍ଫୁଟ ହୁଏ । ସାଧାରଣତଃ ବୁଦ୍ଧିମାନ ମଣିଷର ଅତ୍ୟଧିକ ସମସ୍ୟାର ସମ୍ମୁଖୀନ ହୋଇ ତାର ସମାଧାନ କରିଥାଏ ।

ଅନେକ ସମୟରେ ମଣିଷ ଏକାଧିକ ପ୍ରବର୍ତ୍ତନାର ବଶବର୍ତ୍ତୀ ହେଲେ ମଧ୍ୟ ହତାଶ ହୋଇ ନଯାଇ ପ୍ରତିକ୍ରିୟାଶୀଳ ହୁଏ । ଅଭିଳାଷ ପୂରଣ

ପାଇଁ ଦେଖାଯାଉଥିବା ପ୍ରତିବନ୍ଧକକୁ ଏଡ଼ାଇବାକୁ ଚେଷ୍ଟା ନକରି ଭିନ୍ନ ଉପାୟରେ ତାର ସୁବିଧା ମେଣ୍ଟାଇଥାଏ । ଏପରି କାର୍ଯ୍ୟକୁ ପ୍ରତିରକ୍ଷା କୌଶଳ (Defence mechanism) କୁହାଯାଏ । ପ୍ରଚଳିତ ଗାଳ୍ପିକ ପ୍ରବଚନ 'ଅଙ୍ଗୁରକୋଳି ଖଟା' ବାଲୁଆ ପକ୍ଷରେ ଏକ ପ୍ରତିରକ୍ଷା କୌଶଳ । ଏହାଦ୍ୱାରା ମଣିଷ ହତାଶାଜନିତ ଏକ ଅସ୍ୱାଭାବିକ ପରିସ୍ଥିତିରୁ ନିଜକୁ ରକ୍ଷାକରି ଦେଇପାରେ । କଥିତ ଅଛି, ଇଟାଲୀୟ କବି ଦାନ୍ତେ ଫ୍ଲୋରେନ୍ସ ସହରର ଏକ ଗଳି ଭିତରେ ବେଟ୍ରିସ ନାମକ ଏକ ସୁନ୍ଦରୀ ବାଳିକାକୁ ଦେଖି ତା'ପ୍ରତି ପ୍ରେମାସକ୍ତ ହୋଇପଡ଼ିଲେ ଏବଂ ତାକୁ ବିବାହ ପ୍ରସ୍ତାବ ଦେଲେ; କିନ୍ତୁ ବାଳିକାଟି ଉଚ୍ଚଜାତିର ହୋଇଥିବା ହେତୁ ତାଙ୍କର ଅଭିଳାଷ ପୂରଣ ହୋଇପାରିନଥିଲା । ବାଳିକାଟି ସହିତ ସେ କିଛି କଥାବାର୍ତ୍ତା ହୋଇପାରିନାହାନ୍ତି । ତଥାପି କେତୋଟି ମୁହୂର୍ତ୍ତପାଇଁ ତାକୁ ଦେଖି ଏତେ ପ୍ରେମ-ପାଗଳ ହୋଇଗଲେ ଯେ ତାକୁ ଲକ୍ଷ୍ୟକରି କବିତା ଲେଖିବା ଆରମ୍ଭ କଲେ । ଶେଷକୁ ସେ ଜଣେ ପୃଥିବୀପ୍ରସିଦ୍ଧ କବି ହୋଇ-ପାରିଲେ ।

---

# ଅନୁଭୂତି

ମଣିଷମାନଙ୍କର ପାଞ୍ଚଟି ଇନ୍ଦ୍ରିୟ ଥିବାକଥା ସମସ୍ତଙ୍କୁ ଜଣାଅଛି । ସେଗୁଡ଼ିକ ହେଲା ଆଖି, କାନ, ନାକ, ଜିଭ ଓ ଚର୍ମ । ଏଗୁଡ଼ିକର କାମ ହେଲା ବାହ୍ୟଜଗତ ସହିତ ମଣିଷର ସମ୍ପର୍କ ରଖିବା । କିଏ ଆମକୁ ଡାକଲେ, କେଉଁଠାରେ ଆଲୁଅ ଦେଖାଗଲେ, ସୁଗନ୍ଧ ବା ଦୁର୍ଗନ୍ଧ ବାହାରିଲେ, ଖାଦ୍ୟ ଖାଇଲାବେଳେ ଲୁଣିଆଁ, ଅଲଣା, ଖଟା, ମିଠା କିମ୍ବା ବାହାରେ ଥଣ୍ଡା କି ଗରମ ହେଲେ ଆମେ ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ଜାଣିପାରୁ; କିନ୍ତୁ ଏ ସବୁ ଇନ୍ଦ୍ରିୟଗୁଡ଼ିକ କାର୍ଯ୍ୟକାରୀ ନ ହୋଇ ମଧ୍ୟ ଆମେ ବାହ୍ୟଜଗତ ବିଷୟରେ ଜାଣିପାରୁଛେ । ଉଦାହରଣ ସ୍ୱରୂପ ଆମେ ଆଖିବୁଜି ବସିଲେ ମଧ୍ୟ ପୁରୀରେ ଜଗନ୍ନାଥ ମନ୍ଦିର ଓ ସମୁଦ୍ରକୂଳ ଦେଖି-ପାରୁଛେ । ନିଶୁନ୍‌ଟିଆ ଜାଗାରେ ବସିଲେ ମଧ୍ୟ ରେଲଗାଡ଼ି ବା ଉଡ଼ାଜାହାଜର ଶବ୍ଦ, ସିନେମା ସଙ୍ଗୀତ ଶୁଣିପାରୁଛେ । ଖାଇ ନଥିଲେ ମଧ୍ୟ ଆମ୍ବର କି ରସଗୋଲାର ସ୍ୱାଦ ବାରିପାରୁଛେ । ସେହିପରି ଶୀତାତପ ନିୟନ୍ତ୍ରିତ ଘରେ ବସି ମଧ୍ୟ ବାହାର ଉଷ୍ଣତା ବା ଶୀତଳତା ଅନୁଭବ କରିପାରୁଛେ ମଣିଷ ଶରୀର ଭିତରେ ଏସବୁ କାର୍ଯ୍ୟ ଯାହାଦ୍ୱାରା ସମାହିତ ହେଉଛି, ତାହାକୁ ଶରୀରତତ୍ତ୍ୱବିତ୍‌ମାନେ 'ଷଷ୍ଠ ଇନ୍ଦ୍ରିୟ' ଆଖ୍ୟା ଦେଇଥାଆନ୍ତି; କିନ୍ତୁ ମନସ୍ତତ୍ତ୍ୱବିତ୍‌ମାନେ ଏହାକୁ ପ୍ରତ୍ୟକ୍ଷ ପ୍ରକ୍ରିୟା ବା ଅନୁଭୂତି (Perception) ବୋଲି କହିଥାଆନ୍ତି ।

ମଣିଷର ଅନୁଭୂତି ଏକ ମନୋବୈଜ୍ଞାନିକ ପ୍ରକ୍ରିୟା । ପ୍ରତ୍ୟେକ ମଣିଷ ଓ ପଶୁପକ୍ଷୀଙ୍କ ନିକଟରେ ଏହି ପ୍ରକ୍ରିୟା ଦେଖାଯାଇଥାଏ । କବି, ଲେଖକମାନେ ନିଜର ଏହି ଅନୁଭୂତି ବଳରେ ନୂତନ ସାହିତ୍ୟ ସୃଷ୍ଟି

କରିପାରିଥାଆନ୍ତି । ବାହ୍ୟ ଜଗତର ଉଦ୍ଦୀପନା ଇନ୍ଦ୍ରିୟମାନଙ୍କଦ୍ୱାରା ଶରୀର ଭିତରେ ପ୍ରବେଶ କରିଥାଏ । ଆଲୋକ-ତରଙ୍ଗ ଆଖି, ଶବ୍ଦ-ତରଙ୍ଗ କାନ, ଶୀତଳତା ବା ଉଷ୍ଣତା ଚର୍ମ ଗ୍ରହଣକରି ଶରୀର ଭିତରକୁ ପଠାଇଥାଆନ୍ତି । ପ୍ରତ୍ୟେକ ଉଦ୍ଦୀପନା ଶରୀର ଭିତରେ ଏକପ୍ରକାର ଚଞ୍ଚଳତା ସୃଷ୍ଟି କରେ, ଯା' ଫଳରେ କ ଶରୀରର କାର୍ଯ୍ୟକ୍ଷମ ହୁଏ । ଏହାଦ୍ୱାରା ମଣିଷ ବାହ୍ୟ-ଜଗତର ଘଟଣାବଳୀ ଅନୁଭବ କରେ । ବାହାରେ କୌଣସି ଶବ୍ଦ ଶୁଣାଗଲେ ତାହା ମେଘ ଘଡ଼ଘଡ଼ି କ ରକେଟ ଯିବାର ଶବ୍ଦ ମଣିଷ ଜାଣିପାରେ । ଅନୁଭୂତି ଦ୍ୱାରା ସେ ଗଛଲତା, ପାହାଡ଼ପର୍ବତ, ସମୁଦ୍ର, ନଦୀ, ବୃକ୍ଷ, କୋଠାବାଡ଼ି, ପଶୁପକ୍ଷୀ ଓ ପୃଥିବୀର ଅନ୍ୟାନ୍ୟ ବସ୍ତୁକୁ ସେମାନଙ୍କର ବାସ୍ତବ ରୂପରେ ଜାଣିପାରେ ।

ବାହାରର ଯେଉଁ ତରଙ୍ଗ ଶରୀର ଭିତରେ ପ୍ରବେଶ କରିଥାଏ, ତାହା ସଞ୍ଚାଳିତ ହୋଇ କ୍ଷଣକ ଭିତରେ ଜ୍ଞାନେନ୍ଦ୍ରିୟ ନିକଟରେ ପହଞ୍ଚେ । ଏ କାର୍ଯ୍ୟ ଏତେ କମ୍ ସମୟ ଭିତରେ ଆପେ ଆପେ ସାଧିତ ହୋଇଯାଏ ଯେ ମଣିଷ ମୋଟେ ଜାଣିପାରେ ନାହିଁ । ବିଭିନ୍ନସ୍ତରେ କୌଣସି ବସ୍ତୁଠାରୁ ଆସିଥିବା ଆଲୋକ ବା ଶବ୍ଦର ସାମାନ୍ୟ ସଙ୍କେତ ପାଇଲେ ତା' ବିଷୟରେ ସମ୍ପୂର୍ଣ୍ଣ ଧାରଣା କରିନେବା ହେଲା ମଣିଷର ଧର୍ମ । ଦୂରରୁ ରେଲଗାଡ଼ିର ବାଁଶୀ ଓ ଧୂଆଁ ଦେଖି ରେଲଗାଡ଼ି ବିଷୟରେ ଧାରଣା କରିହୁଏ । ପୁରୀ ଯାଉଥିବା ତୀର୍ଥଯାତ୍ରୀମାନେ ଜଗନ୍ନାଥ ମନ୍ଦିରର ପତାକା ଦେଖି ଭାବପ୍ରବଣ ହୋଇଯାଆନ୍ତି । ସେହିପରି କୌଣସି ଏକ ଆଲୋକ ଦେଖିଲେ ଏହା କେଉଁଠାରୁ ଆସୁଛି, କାହିଁକି ଆସୁଛି ଇତ୍ୟାଦି ବିଷୟରେ ମଣିଷ ଅନୁଭବ କରିବାକୁ ଇଚ୍ଛାକରେ । ପୁଣି କୌଣସି ଗୋଟିଏ ବିଷୟର ଅନୁଭୂତି ମଣିଷର ବୟସ, ରୁଚି, ଅତୀତର ଅଭିଜ୍ଞତା ଉପରେ ନିର୍ଭର କରି ଫରକ ହୋଇଥାଏ । ସେ ଯୁବକ ହୋଇଥିଲେ ତାର ଅନୁଭୂତି ଏକ ପର୍ଯ୍ୟାୟର ଏବଂ ସ୍ତ୍ରୀ ହୋଇଥିଲେ ଆଉ ଏକ ପ୍ରକାର ହୁଏ । ଖବରକାଗଜ ବା ମାଗାଜିନରେ ପ୍ରକାଶ ପାଇଥିବା ଗୋଟିଏ ବିଷୟକୁ କେହି

କେହି ମନସ୍ତାତ୍ତ୍ୱିକ ଦୃଷ୍ଟିରୁ, କେହି କେହି ବୈଜ୍ଞାନିକ ଓ ଆଉ କେହି କେହି ସାହିତ୍ୟିକ ଦୃଷ୍ଟିକୋଣରୁ ଆଲୋଚନା କରିଥାଆନ୍ତି ।

## ଅନୁଭୂତିର ନିୟନ୍ତ୍ରଣକାରୀ—

ମଣିଷର ଅନୁଭୂତି ସାଧାରଣତଃ ଦୁଇପ୍ରକାରେ ନିୟନ୍ତ୍ରିତ ହୋଇ-ଥାଏ । ସେଥିରୁ ଗୋଟିଏ ହେଲା ଅନ୍ତଃ-ନିୟନ୍ତ୍ରଣକାରୀ ଏବଂ ଅନ୍ୟଟି ହେଲା ବାହ୍ୟ ନିୟନ୍ତ୍ରଣକାରୀ । ଅନେକ ସମୟରେ ମଣିଷର ମନଭିତରେ କେତେକ ଅନୁଭୂତି ଲାଭକରିବା ପାଇଁ ଇଚ୍ଛାହୁଏ । ତାହାକୁ ଅନ୍ତଃ-ନିୟନ୍ତ୍ରଣକାରୀ କୁହାଯାଏ । ମାନସିକ ପ୍ରବର୍ତ୍ତନ ସେଥିରୁ ଗୋଟିଏ । ତାର ପ୍ରଭାବରେ ଆମେ ଖାଦ୍ୟ, ପାନୀୟ ପ୍ରତି ଦୃଷ୍ଟି ନିକ୍ଷେପ କରିଥାଉ । ଖାଇବା ଓ ପିଇସାରିବା ପରେ ଖାଦ୍ୟ, ପାନୀୟର ସ୍ୱାଦ ନିର୍ଣ୍ଣୟକରିବା ଏକ ସାଧାରଣ କଥା; ଖାଇବା ଓ ପିଇବା ପୂର୍ବରୁ ମଣିଷ ତାର ସ୍ୱାଦ ଅନୁଭବ କରିଥାଏ ।

ମାନସିକ ପ୍ରବର୍ତ୍ତନା ଫଳରେ ମଣିଷ 'ସ୍ୱର୍ଗକୁ ନିଶୁଣି' ଚଢ଼ିପାରେ ଓ 'ଆକାଶ କଇଁଆ ଚଇଁକା ମାଛ'ର ସ୍ୱାଦ ଅନୁଭବ କରିପାରେ । ରାସ୍ତାରେ ଗଲାବେଳେ ବଡ଼ ବଡ଼ କୋଠାବାଡ଼ି ଦେଖି, ଅନ୍ୟର ସ୍କୁଟର ବା ମଟର-ଗାଡ଼ି ଦେଖି ଓ ତା ଭିତରେ ସୁନ୍ଦରୀ ସ୍ତ୍ରୀଟିକୁ ଦେଖି ଅନେକେ ତାର ମଧୁରତା ଅନୁଭବ କରିଥାଆନ୍ତି । ପାଠପଢ଼ି ଭଲ ଚାକିରି କରିବା, ଅଧିକ ଟଙ୍କା ରୋଜଗାର କରିବା ଏବଂ ବାତାନୁକୂଳ ଘର କରି ସ୍ତ୍ରୀ ପିଲାଙ୍କୁ ନେଇ ସୁଖରେ ରହିବାର କାଳ୍ପନିକ ଆନନ୍ଦ ଅନେକ ଲୋକ ଅନୁଭବ କରି-ଥାଆନ୍ତି । ଏହା ହେଲା ଦିବାସ୍ୱପ୍ନ; କିନ୍ତୁ ନିଦରେ ଶୋଇଥିବା ବେଳେ ଯେଉଁ ସ୍ୱପ୍ନ ଦେଖାଯାଏ, ସେଥିରେ ମଧ୍ୟ ଅନେକ ଲୋକ ଆନନ୍ଦ ଅନୁଭବ କରି ବହଳ ହୋଇଯାଆନ୍ତି କିମ୍ବା ଦୁଃଖରେ ଭାଙ୍ଗି ପଡ଼ନ୍ତି ।

ଅନ୍ତଃ-ନିୟନ୍ତ୍ରଣକାରୀର ଅନ୍ୟ ଏକ ଉପାଦାନ ହେଲା ଅଭ୍ୟାସ । କୌଣସି ଗୋଟିଏ କାମ ଏକାଦିକ୍ରମେ ଅନେକଦିନ ପର୍ଯ୍ୟନ୍ତ କଲେ ସେହି

କାମ ଅଭ୍ୟାହତ୍ରେ ପରିଣତ ହୋଇଯାଏ । ସାଇକେଲ ବା ମଟରରେ ଯିବାବେଳେ ରାସ୍ତାରେ ବାମପଟେ ଯିବା ଛକଜାଗାରେ ଅଟକିବା, ରାସ୍ତାର ଆଲୁଅ ବା ପୁଲିସର ସଙ୍କେତ ଦେଖି ଗାଡ଼ି ଚଳାଇବା କାର୍ଯ୍ୟ ଅଭ୍ୟାସ ଯୋଗୁଁ ହୋଇଥାଏ । ଭୋକ ହେଲେ ଖାଇବା, ହୋଟେଲ ଖୋଜିବା ଓ ଶୋଷ ହେଲେ ପାଣି ଖୋଜିବା ହେଲା ଅଭ୍ୟାସର ପରିଣାମ । ଯେଉଁମାନେ ମଦ ପିଅନ୍ତି, ସେମାନେ ଖୁବ୍ ଦୂରରୁ ମଦ ବୋତଲ ଓ ଗ୍ଲାସ୍‌ର ଝଣଝାଣ ଶବ୍ଦ ଅନୁଭବ କରିପାରନ୍ତି । ଅଭ୍ୟାସବଳରେ ଛାତ୍ରଛାତ୍ରୀମାନେ ସ୍କୁଲ୍ କଲେଜରେ ଘଣ୍ଟା ବାଜିବାର ଶବ୍ଦ ଶୁଣିପାରୁଥିବା ବେଳେ ଅନ୍ୟ ପଥଚାରୀମାନେ ସେସବୁ ଅନୁଭବ କରିପାରନ୍ତି ନାହିଁ । ସବୁଠାରୁ କୌତୂହଳର ବିଷୟ ହେଉଛି ଯେ ଟଙ୍କା କ'ଣ ଜାଣି ନଥିବା ବା ଟଙ୍କା ଦେଖିନଥିବା ଗରିବ ପିଲାଙ୍କୁ ଯଦି ଟଙ୍କାର ଆକାର ବିଷୟରେ ପଚରାଯାଏ, ତେବେ ସେମାନେ ପ୍ରକୃତ ଆକାରଠାରୁ ବଡ଼କରି କହିବେ; କିନ୍ତୁ ଯଦି ଧନୀ ପିଲାଙ୍କୁ ପଚରାଯାଏ, ସେମାନେ ଛୋଟକରି କହିବେ । ତେଣୁ ଟଙ୍କା ସହିତ ଅଭ୍ୟସ୍ତଥିବା ନଥିବା ଭିତରେ ତାରତମ୍ୟ ଏଥିରୁ ଜାଣିହୁଏ । ଅଭ୍ୟାସବଳରେ ଖରାର ଉତ୍ତାପ, ବର୍ଷା ଓ ଶୀତର ଅଣ୍ଡା ଆମେ ଅନୁଭବ କରିପାରୁ । ଗରମହେଲେ ପଙ୍ଖା ବ୍ୟବହାର କରୁ ଓ ଶୀତହେଲେ କମ୍ବଳ ଘୋଡ଼ାଇ ହୋଇପଡ଼ୁ । ତେଣୁ ଅନୁଭୂତି ସହିତ ଅଭ୍ୟାସ ଅଙ୍ଗାଙ୍ଗୀଭାବେ ଜଡ଼ିତ ।

୫ । ୫

ସେହିପରି ବ୍ୟକ୍ତିଗତ ଆଗ୍ରହଦ୍ୱାରା ମଣିଷ ଅନେକ କିଛି ଅନୁଭବ କରିପାରିଥାଏ । କୌଣସି ସହରକୁ ବୁଲିଗଲାବେଳେ ଧର୍ମପ୍ରାଣ ବ୍ୟକ୍ତିମାନେ ମନ୍ଦିର ଦେବଦେବୀଙ୍କୁ ଦର୍ଶନ କରିବାକୁ ଯାଆନ୍ତି । ଶିକ୍ଷାପ୍ରେମୀମାନେ ସ୍କୁଲ୍, କଲେଜ, ପାଠାଗାର ଆଦି ଦେଖନ୍ତି । ଘରକୁ ଖବରକାଗଜ ବା ମାଗାଜିନଟିଏ ଆସିଲେ ନିଜର ଆଗ୍ରହ ଅନୁଯାୟୀ କିଏ କବିତା ପଢ଼େ, କିଏ ଗଳ୍ପ ବା ପ୍ରବନ୍ଧ ଏବଂ ଆଉ କିଏ ଧନ୍ଦା ବା ରାଶିଫଳ ପଢ଼ିଥାଏ ।

## ବାହ୍ୟ ନିୟନ୍ତ୍ରଣକାରୀ—

ମଣିଷ ମନର ଅନ୍ତର ଆଉ ବାହାରେ କେତେକ ବସ୍ତୁ, ସ୍ଥାନ ବା ଘଟଣା ମନକୁ ଆକର୍ଷିତ କରିଥାଏ, ଯାହା ଫଳରେ ଆମେମାନେ ବିଭିନ୍ନ ପ୍ରକାର ଅନୁଭୂତି ଲାଭ କରିଥାଉ । ଧରାଯାଉ, ରାସ୍ତାରେ ଗୋଟିଏ ହାତୀ ଯାଉଛି । ହାତୀ ଚାଲି ଚାଲି ଚାଲିଯାଉଥିବା ବେଳେ ପିଲାମାନେ ତା ପଛରେ ଚାଲି-ଆସନ୍ତି । କେହି କେହି ତାକୁ ଖାଇବାକୁ ଦିଅନ୍ତି । ଆକାଶରେ ଗୋଟିଏ ଉଡ଼ାଜାହାଜ ବା ରକେଟ ଗଲାବେଳେ ଲୋକମାନେ ଆକାଶକୁ ଚାହାନ୍ତି । ହଠାତ୍ ଘଡ଼ଘଡ଼ି, ଚଡ଼ଚଡ଼ି, ବିଜୁଳି ମାରିଲାବେଳେ, ବାଣ ଫୁଟିଲେ ଆମେ ଆଖି କାନ ବନ୍ଦ କରିଦେଉ । ସାଧାରଣତଃ ସମ୍ଭ୍ରାନ୍ତ ପରପୁରୁଷ ବା ପରସ୍ତ୍ରୀକୁ ଛୁଇଁବା ନୈତିକତାର ବାହାରେ । ଜନ୍ମ ମେଳା, ଯାତ୍ରା, ହାଟବଜାର ବା ଗାଡ଼ି ମଟରରେ ଯେତେବେଳେ ପ୍ରବଳ ଜନଗହଳି ହୋଇଥାଏ; ସେତେବେଳେ ଅନିଚ୍ଛାସତ୍ତ୍ୱେ ଦେହକୁ ଦେହ ବାଜିଯାଏ । ଏହିଭଳି କେତେଗୁଡ଼ିଏ ଘଟଣାରେ ମଣିଷ ବାଧ୍ୟହୋଇ ଅନୁଭୂତି ଲାଭ କରିଥାଏ । ତେବେ ଏପରି ଅନୁଭୂତି ଲାଭକରିବା ପଛରେ ଯେଉଁ କେତେଗୁଡ଼ିଏ କାରଣ ଅଛି ସେଗୁଡ଼ିକ ଏଠାରେ ଆଲୋଚନା କରାଯିବା ଦରକାର ।

ଅନୁଭୂତି ଲାଭକରିବାର ବାହ୍ୟ-ନିୟନ୍ତ୍ରଣକାରୀଗୁଡ଼ିକ ହେଲା ପ୍ରଚଣ୍ଡତା, ଆକାର, ଗତିଶୀଳତା, ପରିବର୍ତ୍ତନ ନୂତନତା ଓ ପୁନରାବୃତ୍ତି, ପାଣି, ପବନ, ଝଡ଼, ଶବ୍ଦ, ଆଲୋକ ବା ବର୍ଣ୍ଣର ପ୍ରଚଣ୍ଡତା କିମ୍ବା ଆତିଶଯ୍ୟଦ୍ୱାରା ଆମର ଅନୁଭୂତି ନିୟନ୍ତ୍ରିତ ହୋଇଥାଏ । ଝଡ଼ହେଲେ ଆମେ ଘରକୁ ପଳାଇଆସୁ । ପ୍ରଚଣ୍ଡ ଶବ୍ଦହେଲେ କାନରେ ଆଙ୍ଗୁଠି ଦେଉ । ହଠାତ୍ ଏକ ଉଜ୍ଜ୍ୱଳ ଆଲୋକ ଦେଖାଗଲେ ଆମେ ଆଖି ବନ୍ଦକରିଦେଉ । ଏସବୁ ବ୍ୟବହାର ଦେଖିଲେ ଅନୁଭୂତି ପ୍ରତିଫଳିତ ହେଲାଭଳି ମନେହୁଏ ।

ଛୋଟ ଓ ବଡ଼ ଜିନିଷ ଭିତରେ ଥିବା ତାରତମ୍ୟ ଆମମାନଙ୍କର ମନକୁ ଆକର୍ଷିତ କରିଥାଏ । ସର୍କସ ଭିତରେ ଥିବା ବାମନ-ଜୋକର୍ ଦେଖିଲେ ସମସ୍ତଙ୍କୁ ବେଶି ହସ ମାଡ଼େ । କାରଣ ସର୍କସରେ ହାତୀ,

ଘୋଡ଼ା, ବାଘ, ସିଂହ ଆଦି ବଡ଼ ବଡ଼ ଜନ୍ତୁ । ମାଲଖାର, ଦଉଡ଼ିରେ ଭଡ଼ି ଖେଳ ଦେଖାଇବା ପାଇଁ ହୃଷ୍ଟପୁଷ୍ଟ ପୁରୁଷ ଓ ସ୍ତ୍ରୀ ଥିବାବେଳେ ତାଙ୍କ ଭିତରେ ବାମନ-ଯୋକର୍ ତାର ଖେଳ ଦେଖାଇ ସମସ୍ତଙ୍କ ମନକୁ ଟାଣିନିଏ । ସେହିପରି ଯେଉଁ ଲୋକ ଡେଙ୍ଗା ବା ମୋଟା ସେ ଆଗ ସମସ୍ତଙ୍କ ଆଖିରେ ପଡ଼େ । କଥାରେ କହନ୍ତି, 'ଡେଙ୍ଗା ମୁଣ୍ଡରେ ଠେଙ୍ଗା ।' ଡେଙ୍ଗା ବା ମୋଟା ମଣିଷଙ୍କପରି ବଡ଼ଗଛ, ପଶୁପକ୍ଷୀ, ଏହିପରିକି ସହରର ବଡ଼ ବଡ଼ କୋଠାଘର ଦେଖଣାହାରିଙ୍କ ମନଭିତରେ ସ୍ଥାନ ପାଇଥାଏ । ବିଶେଷତଃ ଚିନତାଲ ବା ସ୍ୱିଟ୍ଜରଲାଣ୍ଡ ବର୍ଣ୍ଣିଷ୍ଟ କୋଠାଘର କଡ଼େ କଡ଼ େଯାଇ ଲୁଡ଼ିଆ ମନ ଭିତରେ ଗଭୀରଭାବରେ ରେଖାପାତ କରେ ।

ଉଡ଼ାଜାହାଜ, ବୁଡ଼ାଜାହାଜ, ରେଳଗାଡ଼ି, ମଟରଗାଡ଼ି ଇତ୍ୟାଦି ଯାଉଥିବା ବେଳେ ପିଲାମାନେ ସେ ଆଡ଼କୁ ଚାହିଁ ଆନନ୍ଦ ଅନୁଭବ କରନ୍ତି । ଗାଡ଼ିଟି ଚିଆଡ଼ୋଇଥିଲେ ମଧ୍ୟ ଲୋକମାନେ ଗାଡ଼ିରେ ଚଢ଼ିବା, ଓହ୍ଲାଇବା ଆଦି ଦ୍ୱାରା ଯେଉଁ ଗତିଶୀଳତା ସୃଷ୍ଟି ହୁଏ ତାହା ମଣିଷ ମନରେ ଏକ ପ୍ରକାର ଅନୁଭୂତ ସୃଷ୍ଟିକରେ । ଠିକ୍ ସେହିପରି ପରିବର୍ତ୍ତନ-ଶୀଳତା ବିଶେଷଭାବେ ଆମର ଦୃଷ୍ଟି ଆକର୍ଷଣ କରିଥାଏ । ଆଜିକାଲି ଯୁବତୀମାନେ ହାଟବଜାରରେ ବା ସ୍କୁଲ କଲେଜରେ ଯାଉଥିବା ବେଳେ ସେମାନଙ୍କର ପୋଷାକ ପରିଚ୍ଛଦ, କେଶ ପ୍ରସାଧନ ଆଦି ଦେଖିଲେ ମନଭିତରେ ଏକ ପ୍ରକାର ନୂତନ ଅନୁଭୂତ ସୃଷ୍ଟି ହୁଏ । ତାହା ଚିରାଚରିତ ଚଳଣିଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଦଶହରା ଓ ଦୀପାବଳୀ ସମୟରେ ଦୋକାନ ବଜାର ସଜାସଜ ହେବାଟା ଏକ ଅଦିନିଆ ଘଟଣା । ସେଥିପାଇଁ ସମସ୍ତେ ବଜାର ବୁଲି ବାହାରନ୍ତି । ନୂଆ ଜିନିଷଟିଏ ଦେଖିଲେ ଆମ ମନରେ ଯେପରି ଏକପ୍ରକାର ଧାରଣା ସୃଷ୍ଟିହୁଏ, ଜିନିଷଗୁଡ଼ିକ ଧାଡ଼ି ଧାଡ଼ି ହୋଇ ସଜା ହୋଇ ରହିଲେ ସେହିପରି ଅନ୍ୟ ଏକ ପ୍ରକାର ଧାରଣା ସୃଷ୍ଟିହୁଏ । ବଗିଚା ଭିତରେ ଯଦି ଗଛଗୁଡ଼ିକ ସମାନ୍ତରାଳଭାବରେ ପୋତାହୋଇଥାଏ ତାହା ଦର୍ଶକର ଦୃଷ୍ଟି ଆକର୍ଷଣ କରେ । କିନ୍ତୁ ଅନାବନା ଗଛଲତାର

ସେପରି ଦୃଷ୍ଟିର ଆକର୍ଷଣକ୍ଷମତା ଶକ୍ତ ନଥାଏ। ଏହିଭଳି କେତେଗୁଡ଼ିଏ ବାହ୍ୟ ଜଗତର ବସ୍ତୁ ଅଛି, ଯାହାକି ମଣିଷର ମନଭିତରେ ଅନୁଭୂତ ସୃଷ୍ଟି କରେ।

ଆମ ମନଭିତରେ ସ୍ୱତଃ ପ୍ରଶ୍ନ ଉଠିପାରେ ଯେ, ମଣିଷର ଅନୁଭୂତ ସୃଷ୍ଟିହୁଏ କିପରି ? ଏକଥା ସତ ଯେ, ଜନ୍ମ ହେବା ଆଗରୁ କାହାରି କୌଣସି ପ୍ରକାର ଅନୁଭୂତ ନ ଥାଏ । ଅବଶ୍ୟ ମହାଭାରତରେ ବର୍ଣ୍ଣନା କରାଯାଇଛି ଯେ, ଅର୍ଜୁନଙ୍କ ପୁଅ ଅଭିମନ୍ୟୁ ଜନ୍ମ ହେବା ଆଗରୁ ବ୍ୟୂହ ଭେଦ କରିବାର କୌଶଳ ଜାଣିଥିଲେ। ଏକଥା ସ୍ୱତନ୍ତ୍ର; କିନ୍ତୁ ଠିକ୍ ଜନ୍ମ ପରେ ପରେ ମଣିଷ, ପଶୁ ବା ପକ୍ଷୀଙ୍କର ଅନୁଭୂତ ଲାଭକରିବା ଆରମ୍ଭ ହୁଏ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଅନୁଭୂତ ବଢ଼ିବାରେ ଲାଗିଥାଏ ।

ଅତୀତର କାର୍ଯ୍ୟକଳାପ ମଣିଷର ଅନୁଭୂତ ପାଇଁ ଏକ ଶ୍ରେଷ୍ଠ ଉପାଦାନ। ଗତକାଲି ଯାହା ଘଟିଛି, ତାହା ଆଜିପାଇଁ ଓ ଆଜି ଯାହା ଘଟୁଛି, ତାହା ଆସନ୍ତାକାଲିର ପାଥେୟ। ଆମେ ବେଳେ ବେଳେ କହିଥାଉ ଯେ 'ମୁଁ ଜାଣିଛି', 'ମୁଁ ଦେଖିଛି'। ଏହାର ଅର୍ଥ ହେଲା, କୌଣସି ଗୋଟିଏ ବିଷୟରେ ମୋର ଅତୀତରେ ଅଭିଜ୍ଞତା ଅଛି । ଅନ୍ୟ ଦୃଷ୍ଟିରୁ ବୁଝାଯିବ ଯେ, ନିଆଁକୁ ଧରିଲେ ହାତ ପୋଡ଼ିଯିବ । ପହଁରି ନ ଜାଣି ପାଣିରେ ପଶିଲେ ବୁଡ଼ିଯିବାର ଅନୁଭୂତ ମୋର ଅଛି । ଅନୁଭୂତ ମାଧ୍ୟମରେ ଛୋଟପିଲା ଓ ବୁଢ଼ାମାନଙ୍କ ଭିତରେ ଥିବା ତାରତମ୍ୟ ଜାଣିହୁଏ । ପିଲାମାନଙ୍କର କିଛି ଅନୁଭୂତ ନଥାଏ, ଅଥଚ ବୁଢ଼ାମାନଙ୍କର ଯଥେଷ୍ଟ ଅନୁଭୂତ ଥାଏ। ସାପଟି ବିଷାକ୍ତ ହୋଇ ନଥିଲେ ମଧ୍ୟ ବଡ଼ମଣିଷମାନେ ତାକୁ ଦେଖି ତାଆଁରେ ଦୌଡ଼ି ପଳାନ୍ତି ଅଥଚ ପିଲାମାନେ ହାତରେ ଧରି ଖେଳନ୍ତି । ନାଲି ନେଳି ରଙ୍ଗର ବିଷଔଷଧକୁ ମଧ୍ୟ ପିଲାମାନେ ପିଇଦିଅନ୍ତି; କିନ୍ତୁ ବଡ଼ମାନେ ଛୁଅନ୍ତି ନାହିଁ । ଠିକ୍ ସେହିପରି ଜାତି, ଧର୍ମ, ଛୁଆଁ ଅଛୁଆଁ ବିଚାର କେବଳ ବଡ଼ମାନଙ୍କର ମନଭିତରେ ଥାଏ। ପିଲାମାନେ ଏ ବିଷୟରେ

ଧାର ଧାରନ୍ତି ନାହିଁ । କାରଣ ବସ୍ତୁସମାନେ ଅନ୍ୟମାନଙ୍କର ମୂଲ୍ୟବୋଧ ଓ ବିଶ୍ୱାସଧାରା ଦ୍ୱାରା ପ୍ରଭାବିତ ହୋଇଥାଆନ୍ତି ମାହାକି ପିଲମାନଙ୍କର ନଥାଏ ।

ମଣିଷର ଅଭିଳାଷ ଓ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଉପରେ ଅନୁଭୂତ ନିର୍ଭର କରେ । ପୃଥିବୀରେ ଅନେକ ଘଟଣା ଘଟିଯାଏ । ସେଥିରୁ କେତେକ ପ୍ରାକୃତିକ ଓ ଆଉ କେତେକ କୃତ୍ରିମ, କିନ୍ତୁ ପ୍ରତ୍ୟେକ ଘଟଣାରେ କିଛି ନା କିଛି ଅର୍ଥ ଥାଏ । ମଣିଷ ନିଜ ସ୍ୱାର୍ଥ ଦୃଷ୍ଟିରୁ ସେ ସବୁର ଅର୍ଥ କରିଥାଏ । ତାହାଦ୍ୱାରା ତାର ନିଜର ଅଭିଳାଷ ପୂରଣ ହୁଏ । ଏଠାରେ ଗୋଟିଏ ଉଦାହରଣ ଦିଆଯାଇପାରେ । ଚନ୍ଦ୍ର ଉଦୟ ହେଲେ ପ୍ରେମିକ ପ୍ରେମିକାଙ୍କର ଆନନ୍ଦର ସୀମା ନଥାଏ, କାରଣ ଏହା ସେମାନଙ୍କର ମିଳନର ପ୍ରକୃଷ୍ଟ ସମୟ । ଅଥଚ ଚୋରର ତସ୍କରଙ୍କର ନଜରରେ ଏହା ବିପଦର ଏକ ଘଣ୍ଟି-ସନ୍ଧ ବେଳ । ତେଣୁ ଚନ୍ଦ୍ରକୁ ଦେଖି କିଏ ଯେଉଁ ଆନନ୍ଦ ଅନୁଭବ କରେ, ଆଉ କିଏ ଦୁଃଖରେ ଭାଙ୍ଗିପଡ଼େ । ଠିକ୍ ସେହିପରି ସୂର୍ଯ୍ୟୋପରାଗ ବା ଚନ୍ଦ୍ରଗ୍ରହଣ ଦେଖି କେହି କେହି ଯେତେବେଳେ ଶୁଦ୍ଧସ୍ନାନ କରି ହୋମ, ପୂଜାପାଠ ଆଦି କରିବସନ୍ତି ଅନ୍ୟ କେହି ଦୂରବୀକ୍ଷଣ ଯନ୍ତ୍ରଧରି ସେମାନଙ୍କର ଗତିବିଧି ଲକ୍ଷ୍ୟକରନ୍ତି । ଏଠାରେ ଗୋଟିଏ ପରୀକ୍ଷାମୂଳକ ପ୍ରମାଣ ଦେଲେ କଥାଟିର ଯଥାର୍ଥତା ବୁଝାପଡ଼ିବ । କେତେକ ଲୋକଙ୍କୁ ୨୪ଘଣ୍ଟା ଉପାସ ରଖି ଦିଆଗଲା । ତା'ପରେ ଗୁଡ଼ିଏ ଅର୍ଥହୀନ କାଳିଦାଗର ଚିତ୍ର ଗୋଟିଏ ପରଦା ଉପରେ ପକାଇ "ଏହା କ'ଣ" ବୋଲି ସେମାନଙ୍କୁ ପଚରାଗଲା । ସେମାନେ ସମସ୍ତେ ଏହା ଖାଇବା ଜିନିଷ ବୋଲି କହିଲେ । କେହି କେହି ଆଳୁଏ ଭାତ ବୋଲି କହିବାବେଳେ ଆଉ କେହି ରୁଟି, ପରଟା ବା ରସଗୋଲା ବୋଲି କହିଲେ । କେତେକ ଲୋକ ଖାଇବା ଜିନିଷ ରଖାଯାଇଛି ଭାବି ପରଦା ନିକଟକୁ ଦୌଡ଼ିଗଲେ । ଆଉ ଗୋଟିଏ ପରୀକ୍ଷାରେ କେତେକ ଗରିବ ଓ ଧନୀ ପିଲାଙ୍କୁ ଟଙ୍କିକିଆ ମୁଦ୍ରାର ଚିତ୍ର କରିବାକୁ କୁହାଗଲା । ଗରିବ ପିଲାଙ୍କର ଚିତ୍ର ଟଙ୍କାର ଆକାର ଅପେକ୍ଷା ଖୁବ୍ ବଡ଼ ଓ ଧନୀ ପିଲାଙ୍କର

ଖୁବ୍ ଶ୍ରେଷ୍ଠ ଥିଲା । ଏଥିରୁ ଧାରଣା କରାଗଲା ଯେ, ଗରିବ ପିଲାଙ୍କର ଟଙ୍କାର ଗୁରୁତ୍ୱ ଅଧିକ ଥିବାରୁ ସେମାନେ ଟଙ୍କାକୁ ଖୁବ୍ ବଡ଼କରି ଦେଖିଲେ । ଅନ୍ୟ ପକ୍ଷରେ ଧନୀ ପିଲାଙ୍କର ଅପର୍ଯ୍ୟାପ୍ତ ଟଙ୍କା ଥିବାରୁ ସେମାନେ ଟଙ୍କାକୁ ଶ୍ରେଷ୍ଠକରି ଦେଖିଲେ ।

## ଭ୍ରମ ଅନୁଭୂତି –

"ଯାହାକୁ ସାପ କାମୁଡ଼ିଥାଏ ତା ମାଆ ପାଳଦଉଡ଼ି ଦେଖିଲେ ଡରେ ।"—ଏ କଥାର ଅର୍ଥ ହେଲା ସେ ଦଉଡ଼ିକୁ ମଧ୍ୟ ସାପ ବୋଲି ବିଶ୍ୱାସ କରେ । ଏହା ହେଲା ଗୋଟିଏ ଭ୍ରମ ଅନୁଭୂତି । ମୁହଁ ଅନ୍ଧାରିଆ ବେଳେ ରାସ୍ତାରେ ଚାଲିବେଳେ ଆଗରେ ଥାଉ ଜଣେ ଲୋକ ଯାଉଥିଲାପରି ଜଣାଯାଏ । ବେଳେବେଳେ ଆମେ ଡାକଦେଉ, "ଏ ଭାଇ ! ଆଗରେ କିଏ ଯାଉଛ ? ଟିକିଏ ରହ, ସାଥୀ ହୋଇ ଯିବା ।" କିନ୍ତୁ କିଛି ଉତ୍ତର ଆସେନାହିଁ । ପୁଣି ଡାକ ଡାକ ଯାଇଁ ପାଖରେ ପହଞ୍ଚିଲା ବେଳକୁ ଗୁଣ୍ଡା ଗଛଟାଏ ।

ମରୀଚିକାକୁ ଲୋକମାନେ ମାୟା ମରୀଚିକା ବୋଲି କହିଥାଆନ୍ତି । ସେଇଟା କ'ଣ ? ଖରାଦିନିଆ ଉଦୁଉଦିଆ ଦ'ପହରରେ ଶୁଖିଲା ନଈ ବାଲିରେ ଠିଆହେଲେ କିଛି ଦୂରରେ ପାଣି ଚକ୍ ଚକ୍ କରୁଥିବା ପରି ଜଣାଯାଏ । ଯେତେ ପାଖକୁ ପାଖକୁ ଗଲେ ତାହା ସେତିକି ଦୂରକୁ ଦୂରକୁ ଘୁଞ୍ଚି ଯାଉଥାଏ । ମରୁଭୂମିର ମାୟାରାଣୀ ମରୀଚିକା ଠିକ୍ ଏହିପରି ଜାଲ ବିଛାଇ ରଖିଥାଏ । ବାଟୋଇମାନେ ପାଣି ପାଇବା ଆଶାରେ ତା ପାଖକୁ ଗଲେ ସେ ଆଖି ନଚାଇ ନଚାଇ ନିଜଆଡ଼କୁ ଟାଣିନିଏ । ବାଟୋଇ ବିଚରା ବହୁତ ଆଶାକରି ତାକୁ ଧରିବାକୁ ଧାଇଁଥାଏ ! ଶେଷରେ ଦେଖେ ଏ ପାଣି ଏକ ଶୂନ୍ୟବାଦ—ମାୟା—ମରୀଚିକା । ବିଚରାର ପ୍ରାଣ ଚାଲିଯାଏ ।

ଏଭଳି ଭ୍ରମ ଅନୁଭୂତି ପ୍ରାୟ ସବୁ ଲୋକଙ୍କର ଅଳ୍ପେ ବହୁତେ ଥାଏ । ରାମବାବୁଙ୍କୁ ଦେଖି ମଧ୍ୟ ବେଳେ ବେଳେ କହୁଥାଉ—ଆପଣ

ଶ୍ୟାମ ନାଚୁଛି ? କମ୍ବା ସୀତାକୁ ଦେଖି କହୁଥାଉ—ତୁମେ ଗୀତାଟି ? ଓଃ ଓଃ, ଭୁଲ୍ ହୋଇଗଲା । ତା'ପରେ ନିଜର ଭୁଲ୍ ସଂଶୋଧନ କରିଦେଉ । ଠିକ୍ ସେହିଭଳି ଦୂରରୁ ଗୀତଟିଏ ଶୁଣି ଗାୟକ ବା ଗାୟିକାଙ୍କୁ ସଠିକ ଭାବରେ ଜାଣିହୁଏ କି ? ବେଳେ ବେଳେ ହୁଏ ନାହିଁ । ସାଙ୍ଗ ପିଲାଙ୍କ ମେଳରେ ଆଖିବୁଜି ବସିଥିବା ବେଳେ କିଏ ଜଣେ ମୁହଁ ଉପରେ କିଛି ପକାଇଦିଏ । ମନେହୁଏ ଫୁଲଟିଏ । କିନ୍ତୁ ଆଖି ଖୋଲି ଦେଖିଲେ ଜଣାଯାଏ, ତାହା ଫୁଲ ନୁହେଁ ତୁଳା ମେଞ୍ଚାଏ ।

ଆଖି, କାନ ଓ ଚର୍ମ ମାଧ୍ୟମରେ ଯେପରି ଭ୍ରମ ଅନୁଭୂତ ଲାଭ କରିହୁଏ ସେହିପରି ନାକ ଓ ଜିଭଦ୍ୱାରା ମଧ୍ୟ ପାଇହୁଏ । ମୋଟଉପରେ ପଞ୍ଚେନ୍ଦ୍ରିୟ ଭିତରୁ ପ୍ରତ୍ୟେକ ଇନ୍ଦ୍ରିୟ ମାଧ୍ୟମରେ ଅନୁଭୂତ ଲାଭ କରିହୁଏ । 'ମୁନିରପି ମତିଭ୍ରମ' । ତେଣୁ ଭୁଲ ହୁଏ କାହିଁକି ? ଏଥିପାଇଁ ବିଭିନ୍ନ ପ୍ରକାର ମତବାଦ ଅଛି । ସେଥିମଧ୍ୟରୁ ଗୋଟିଏ ହେଲା ଇନ୍ଦ୍ରିୟଗତ । ବାହ୍ୟ ଜଗତର ଆଲୋକ, ଶବ୍ଦ ବା ଯେକୌଣସି ବସ୍ତୁକୁ ଇନ୍ଦ୍ରିୟମାନେ ଗ୍ରହଣ କଲାବେଳେ ସମୁଦାୟ ବସ୍ତୁର ଗୋଟିଏ ଗୋଟିଏ ଅଂଶ ଗ୍ରହଣ କରନ୍ତି । ମସ୍ତିଷ୍କ ଭିତରେ ସେଗୁଡ଼ିକ ପୁଣି ଯୋଡ଼ିହୋଇ ଯାଆନ୍ତି । ଏହି କାର୍ଯ୍ୟକ୍ରମ ଭିତରେ ଯଦି କେଉଁଠାରେ କିଛି ଅସଙ୍ଗତ ଘଟିଯାଏ ତେବେ ସମ୍ପୂର୍ଣ୍ଣ ଅନୁଭୂତିରେ ଭୁଲ ଦେଖାଯିବା ସ୍ୱାଭାବିକ ।

ବାହ୍ୟଜଗତରେ କୌଣସି ବସ୍ତୁକୁ ଭିନ୍ନ ରୂପରେ ଦେଖି ଆମର ଭ୍ରାନ୍ତ ଧାରଣା ସୃଷ୍ଟି ହୋଇପାରେ; କିନ୍ତୁ ବାହ୍ୟଜଗତରେ କୌଣସି ବସ୍ତୁ ନଥାଇ ମଧ୍ୟ ମନ ଭିତରେ ବେଳେବେଳେ ଏକପ୍ରକାର ଭ୍ରାନ୍ତ ଧାରଣା ଜନ୍ମିଥାଏ—ଯେପରି ଭୂତ ଦେଖିବା । ଆପଣ କେବେ ଭୂତ, ପ୍ରେତ କି ଅଶରୀରୀ ଦେଖିଛନ୍ତି ? ସେଗୁଡ଼ିକ କ'ଣ ? ଜଣେ ଜଣେ ଶୂନ୍ୟବାଣୀ ଶୁଣିଛନ୍ତି ବୋଲି କହନ୍ତି । ସେଥିରେ ସେମାନେ ଈଶ୍ୱରଙ୍କର ବାଣୀ ଶୁଣିଛନ୍ତି ବୋଲି ପ୍ରଚାର କରନ୍ତି । ଏସବୁ ଦେଖିବା ବା ଶୁଣିବା ଏକପ୍ରକାର ମାନସିକ ବ୍ୟାଧି । ଯେଉଁମାନଙ୍କର ରୁଗ୍ଣ ବା ଅସୁସ୍ଥ ମନ ସେହିମାନେ କେବଳ

ଏ ପ୍ରକାର ଅନୁଭୂତ ଲାଭ କରିଥାଆନ୍ତି । ପାରିବାରିକ ଅଶାନ୍ତି, ଜୀବନରେ ବିଫଳତା, ଆଜୀବନ ରୋଗାକ୍ରାନ୍ତ ଶରୀର, ଅନନ୍ୟ ପ୍ରତି ଈର୍ଷା, ଦ୍ୱେଷ ପ୍ରଭୃତ କେତେଗୁଡ଼ିଏ କାରଣ ଅଛି ଯାହାଦ୍ୱାରା କ ମଣିଷର ମନ ଅସୁସ୍ଥ ହୋଇଯାଏ । ଏପରିକ ମଦ ପିଇ ମାତାଲ ହେଲେ ବା ଭାଙ୍ଗ, ଗଞ୍ଜା, ଅଫିମ ଖାଇଲେ ମଣିଷ 'ଅଶରୀରୀ' ଦେଖିପାରେ ଓ 'ଶୂନ୍ୟବାଣୀ' ଶୁଣିପାରେ ।

ମଣିଷର ଅନୁଭୂତ ନୂତନ ବସ୍ତୁ ଉପରେ କିଛି ନଥାଏ । ଚନ୍ଦ୍ରପୃଷ୍ଠରେ ବୁଲିବା, ରକେଟରେ ଯିବା, ଯୁଦ୍ଧକ୍ଷେତ୍ରରେ ଶତ୍ରୁ ସଙ୍ଗରେ ଲଢ଼ିବା ବା ଭୟାବହ ରୋଗଯନ୍ତ୍ରଣାରେ ଛଟପଟ ହେବାରେ ଅନୁଭୂତ ସମସ୍ତଙ୍କର ନଥାଏ । ଅତୀତର ଶିକ୍ଷା ବା ଟ୍ରେନିଂ ନଥିବା ହେତୁ ଅନ୍ଧମାନେ ପାଠପଢ଼ି ପାରନ୍ତି ନାହିଁ । ଅନେକ ମନସ୍ତାତ୍ତ୍ୱିକ ଗବେଷଣା ହୋଇ ଏହାର ସତ୍ୟତା ପ୍ରମାଣିତ ହୋଇସାରିଛି ।

# ଭାବପ୍ରବଣତା

ଭାବପ୍ରବଣତା ବା ପ୍ରକ୍ଷୋଭ (Emotion) ମଣିଷର ଏକ ସ୍ୱଭାବଗତ ବ୍ୟବହାର ; କେବଳ ମଣିଷ କାହିଁକି 'ପଶୁପକ୍ଷୀଙ୍କ ନିକଟରେ ମଧ୍ୟ ଏ ପ୍ରକାର ବ୍ୟବହାର ଦେଖି ଦେଇଥାଏ । ବିବର୍ତ୍ତନବାଦର ପ୍ରବର୍ତ୍ତକ ବୈଜ୍ଞାନିକ ଡାରଉଇନ୍ ସର୍ବପ୍ରଥମେ ଶିଶୁମାନଙ୍କ ମନର ଭାବପ୍ରବଣତା ଅନୁଧ୍ୟାନ କରିଥିଲେ । ତାଙ୍କ ମତରେ 'ବିବର୍ତ୍ତନବାଦ ଫଳରେ ମଣିଷର ଭାବପ୍ରବଣତା ସ୍ଥାନ ପାଇଥାଏ । ତେଣୁ ଏହା ଏକ ଜନ୍ମଗତ ସ୍ୱଭାବ; କିନ୍ତୁ କେତେବର୍ଷ ପରେ ମନସ୍ତାତ୍ତ୍ୱିକମାନେ ଡାରଉଇନ୍ଙ୍କ ମତବାଦକୁ ସାମାନ୍ୟ ପରିବର୍ତ୍ତନ କରି କହିଥିଲେ ଯେ, ମଣିଷର ସମସ୍ତପ୍ରକାର ଭାବପ୍ରବଣତା ଜନ୍ମଗତ ନୁହେଁ । କେବଳ ଭୟ, କ୍ରୋଧ ଓ ସ୍ନେହ ଜନ୍ମଗତ; ଅନ୍ୟ ସମସ୍ତ ତା ଦେହରୁ ସୃଷ୍ଟି ।

ହସ ଓ କାନ୍ଦ ଦୁଇଟି ସାଥୀ ଭାବପ୍ରବଣତାର ପରିଚୟ ଦିଅନ୍ତି । ମଣିଷ ମନଖୁସିରେ ଥିଲାବେଳେ ହସିଦିଏ ଓ ଦୁଃଖ ଅନୁଭବ କଲେ କାନ୍ଦିପକାଏ । ପିଲାଟିଏ ଜନ୍ମହେବା ପରେ ପରେ କାନ୍ଦେ । କିନ୍ତୁ ତାହା ତାର ଭାବ-ପ୍ରବଣତାର ପରିଚାୟକ ନୁହେଁ । ପେଟ ଭିତରେ ଜମାଥିବା ପବନ ବାହାରକୁ ବାହାରିଆସେ । ଜନ୍ମପୂର୍ବରୁ ଶିଶୁର ଆବେଗ ନଥାଏ । ସେତେବେଳେ ତାର ମନ ନିର୍ମଳ ଓ ସ୍ୱଚ୍ଛ । କିନ୍ତୁ ଜନ୍ମ ପରେ ପରେ ସାଂସାରିକ ପ୍ରଭାବ ତା' ମନ ଭିତରେ ପଡ଼ିଥାଏ । କ୍ରମଶଃ କାମ, କ୍ରୋଧ, ଲୋଭ, ମୋହ ଇତ୍ୟାଦି ତା ମନରେ ସ୍ଥାନ ପାଏ, ଯା' ଫଳରେ ସେ ଦୁଃଖରେ କାନ୍ଦେ ଓ ଆନନ୍ଦରେ ହସିପକାଏ ।

ମଣିଷ ମନରେ ଭାବପ୍ରବଣତା ସ୍ଥାନ ପାଇଛି ବୋଲି ଜାଣିବାକୁ ହେଲେ ତାହାର ସ୍ନାୟୁଚାଳଣ ଓ ଅଙ୍ଗପ୍ରତ୍ୟଙ୍ଗର ବ୍ୟବହାରକୁ ଲକ୍ଷ୍ୟ କରିବା ଦରକାର । ଜଣେ ରାଗିଲେ ତାର ମୁହଁ ଗମ୍ଭୀର ଦେଖାଯାଏ, ଆଖି ନାଲି ପଡ଼ିଥାଏ । କଥା କହିଲାବେଳେ କପାଳରେ ରେଖା କୁଞ୍ଚି କୁଞ୍ଚି ହୋଇଥାଏ, ଓଠ ଥରେ, ଦେହର ଅନ୍ୟ କେତେକ ଅଙ୍ଗପ୍ରତ୍ୟଙ୍ଗ ମଧ୍ୟ ଥରୁଥାଏ । ଏସବୁ ଦେଖି ମନେ ହୁଏ ଯେ, ସେ ଲୋକଟି ରାଗିଛି । ସେହିପରି ଲୋକଟିର ମନ ଖୁସିଥିବାବେଳେ ତାର ମୁହଁରେ ହସ ଥାଏ, ଗୀତ ଗାଉଥାଏ, ଶିଟି ବଜାଏ । ମୋଟ ଉପରେ ଭାବପ୍ରବଣତାର ପ୍ରଭାବ ପଡ଼ିଥିବା କଥା ମଣିଷର ଶରୀରକୁ ଦେଖିଲେ ଜାଣିହୁଏ । କେବଳ ମଣିଷ ନୁହେଁ ପଶୁ-ପକ୍ଷୀଙ୍କର ମନର ଭାବପ୍ରବଣତା ମଧ୍ୟ ସେମାନଙ୍କର ବ୍ୟବହାର ଜଣାଇଦିଏ । ଯେଉଁ ପଶୁମାନଙ୍କର ବ୍ୟବହାରରେ ଭାବପ୍ରବଣତା ପରିଲକ୍ଷିତ ହୋଇଛି, ସେମାନଙ୍କ ଭିତରୁ କୁକୁର, ବିରାଡ଼ି, ଗାଈ, ଛେଳି, ମେଣ୍ଢା, ମୂଷା, ଷଣ୍ଢ ଇତ୍ୟାଦି ପ୍ରଧାନ । କୁକୁର, ମୂଷା, ଷଣ୍ଢ ଉପରେ ପରୀକ୍ଷା କରି ଦେଖା-ଯାଇଛି ଯେ ସେମାନଙ୍କର ମସ୍ତିଷ୍କର ଏକ ଅଂଶ ହାଇପୋଥାଲମସ୍‌ରେ ବିଦ୍ୟୁତ୍ ସଂଯୋଗ କଲେ ସେମାନେ ଭାବପ୍ରବଣ ହୋଇପାରନ୍ତି । ସେତେବେଳେ ସେମାନଙ୍କର ଶରୀର ଓ ବ୍ୟବହାରରେ ପରିବର୍ତ୍ତନ ଦେଖାଯାଏ । ଏଠାରେ ଗୋଟିଏ ଷଣ୍ଢଲଢ଼େଇ କଥା ଦେଖାଯାଉ । ଗୋଟିଏ ଷଣ୍ଢକୁ ଲଢ଼େଇ ପାଇଁ ପ୍ରସ୍ତୁତ କରାଗଲା । ପ୍ରଥମେ ତାର ମସ୍ତିଷ୍କ ଅପରେସନ୍ କରି ସେଥିରେ ଗୋଟିଏ ବୈଦ୍ୟୁତିକ ଯନ୍ତ୍ର (ଇଲେକ୍‌ଟ୍ରୋଡ୍) ରଖି ଦିଆଗଲା । ଏହାକୁ ହାଇପୋଥାଲମସ ସହିତ ସଂଯୁକ୍ତ କରିଦିଆଗଲା । ଏହି ଯନ୍ତ୍ରର ସ୍ୱିଚ୍‌ଟିକୁ ଗୋଟିଏ ଟ୍ରାଞ୍ଜିଷ୍ଟର ଯନ୍ତ୍ର ସହିତ ଯୋଡ଼ି ଜଣେ ଯୁବକ ତାକୁ ହାତରେ ଧରିଲା । ତା'ପରେ ଷଣ୍ଢ ଲଢ଼େଇ ପାଇଁ ଦିନ ବାର ଠିକ୍ ହେଲା । ହଜାର ହଜାର ଲୋକ ଯୁବକ ସହିତ ଷଣ୍ଢର ଲଢ଼େଇ ଦେଖିବା ପାଇଁ ଜମା ହେଲେ । ଯୁବକଟି ହାତରେ ଟ୍ରାଞ୍ଜିଷ୍ଟର ଯନ୍ତ୍ରଟିକୁ ଧରି ଲଢ଼େଇ ପାଇଁ ଆଗେଇ ଆସିଲା । ଯେତେବେଳେ ଯନ୍ତ୍ରଟିକୁ ଚଳାଇ-ଦେଲା, ସେତେବେଳେ ଷଣ୍ଢ ରାଗରେ ଗର୍ଜନ କରି ତା' ଆଡ଼କୁ ମାଡ଼ି

ଆସିଲା । ଲୋକେ ଭାବିଲେ, ବୋଧହୁଏ, ଷଣ୍ଢଟି ଲୋକଟିକୁ ଶିଂଘରେ ଭୁଷିଦେବ ବା ଖୁରାରେ ଦଳିଚକଟି ଖତମ କରିଦେବ; କିନ୍ତୁ ହଠାତ୍ ଅବସ୍ଥା ବଦଳିଗଲା । ଯୁବକଟି ପିସ୍ତୁଲଟିକୁ ବନ୍ଦ କରିଦେଲା । ତା'ପରେ ଦେଖାଗଲା ଯେ, ଷଣ୍ଢଟି ଯେଉଁଠାରେ ଥିବା କଥା ସେଠାରେ ଠିଆ-ହୋଇଛି । କ୍ରମଶଃ ସେ ସେଠାରେ ଶୋଇବାକୁ ଆରମ୍ଭ କଲା । ଏଭଳି ଏକ ଘଟଣାରୁ ଭାବପ୍ରବଣତା ପାଇଁ ମସ୍ତିଷ୍କର କାର୍ଯ୍ୟ ସମ୍ବନ୍ଧରେ କିଛି କିଛି ଧାରଣା କରିହେବ ।

ଭାବପ୍ରବଣତା ଅନେକ ସମୟରେ ମଣିଷ ମନରେ କାମ କରିବାପାଇଁ ପ୍ରେରଣା ଯୋଗାଇଥାଏ । ଯେଉଁ କାମ କଲେ ମଣିଷର ମନ ଖୁସି ହୁଏ, ସେହି କାମ ବାରମ୍ବାର କରିବାକୁ ସେ ଆଗ୍ରହ ଦେଖାଏ ଏବଂ ଯାହାଦ୍ୱାରା ମନ ଖରାପ ହୁଏ, ସେ ତାହାକୁ ତ୍ୟାଗ କରେ । ଉଦାହରଣସ୍ୱରୂପ ଯେତେବେଳେ ପିଲାଟିକୁ ନୂଆ ଖେଳଣା, ଜାମା ପ୍ୟାଣ୍ଟ ଆଦି ଦିଆଯାଏ, ସେତେବେଳେ ତାକୁ କୌଣସି ନୂଆ କଥା ଶିଖାଇଲେ ସେ ଶିଖିଯାଏ; କିନ୍ତୁ ତା'ଠାରୁ ଖେଳଣା ଛଡ଼ାଇନେଲେ ସେ କାନ୍ଦିଉଠେ । ଠିକ୍ ସେହିପରି ଘରକୁ ଜଣେ ଅତିଥି ଆସିଲେ ଯେ ଯଦି ପିଲାଟିକୁ ବିସ୍କୁଟ, କମଳା ଇତ୍ୟାଦି ଦେଇ କୋଳେଇ କାଖେଇ ପାଖକୁ ନିଅନ୍ତି, ତେବେ ସେ ତାଙ୍କୁ ଆଦର ଦିବ । ଯଦି ଗାଳିଦିଅନ୍ତି, ରାଗିହୁଅନ୍ତି କିମ୍ବା ସ୍ନେହ ଆଦର ଦେଖାନ୍ତି ନାହିଁ ତେବେ ପିଲାଟି ତାଙ୍କଠାରୁ ଦୂରେଇଯିବ । ପରୀକ୍ଷା ସମୟ ସବୁ ପିଲାଙ୍କପାଇଁ ଏକ କଷ୍ଟଦାୟକ ସମୟ । ଏ ସମୟରେ ପିଲାମାନଙ୍କର ସାଧାରଣ ବ୍ୟକ୍ତିତ୍ୱରେ ପରିବର୍ତ୍ତନ ଦେଖାଯାଏ । କେହି କେହି ପରୀକ୍ଷାକୁ ଖୁବ୍ ଡରଯାଇଥାଆନ୍ତି । ତେଣୁ ଶାରୀରିକ ଅସୁସ୍ଥତା ଓ ଅସ୍ୱାଭାବିକ ବ୍ୟବହାର ଦେଖାନ୍ତି । ଆଉ କେହି କେହି ଖୁବ୍ ଦୃଢ଼ତାର ସହିତ ପରୀକ୍ଷା ପାଇଁ ପ୍ରସ୍ତୁତ ହୁଅନ୍ତି । ତେଣୁ ଭାବପ୍ରବଣତା ବେଳେ ବେଳେ ମଣିଷକୁ ଅଧିକ କାର୍ଯ୍ୟକ୍ଷମ କରିଥାଏ ଏବଂ ଆଉ କେତେକ ସମୟରେ ତାକୁ କାର୍ଯ୍ୟରୁ ନିବୃତ୍ତ କରିଥାଏ ।

ମଣିଷ ଯେତେବେଳେ ସ୍ନାୟୁପ୍ରବଣତା ହୋଇଯାଏ, ସେତେବେଳେ ତାର ମାନସିକ ଓ ଶାରୀରିକ ଉଭୟ ପ୍ରକାର ପରିବର୍ତ୍ତନ ଦେଖାଦିଏ । ମାନସିକ ପରିବର୍ତ୍ତନ ହେବାଦ୍ୱାରା ସେ ଭଲଭାବରେ ଭାବିବା, ବୁଝିବା, ଶିଖିବା, ମନେରଖିବା ଓ କୌଣସି ନିଷ୍ପତ୍ତି ନେବା କାମ କରିପାରେନାହିଁ । ଏହା ସହିତ ବେଳେ ବେଳେ ତାର ମାନସିକ ଅଧଃପତନ ଘଟିଥାଏ । ସେ ମନମାରି ରହିଯାଏ କିମ୍ବା ଅତ୍ୟଧିକ କ୍ଳାନ୍ତ ଜଣାପଡ଼େ । ଧରିନିଅ ଜଣେ କୌଣସି କାରଣରୁ ରାଗିଗଲେ ସେତେବେଳେ ତାଙ୍କର ମନ ଏତେଦୂର ଅସ୍ଥିର ହୋଇଯାଏ ଯେ, ସେ ଉପଯୁକ୍ତ କୌଣସି ମାନସିକ କାର୍ଯ୍ୟ କରିପାରନ୍ତି ନାହିଁ । ଏପରିକି ସେ କାହିଁକି ରାଗିଛନ୍ତି ବୋଲି ଯଦି ପଚରା-ଯାଏ, ତେବେ ତାହା ମଧ୍ୟ ସେ ଠିକ୍ ଭାବରେ ଭାବିପାରିବେ ନାହିଁ ବା କହିପାରିବେ ନାହିଁ । ମଣିଷ ରାଗିବାବେଳେ ଯେପରି ମାନସିକ ସ୍ଥିରତାମ୍ୟ ହରାଇବସେ, ଖୁବ୍ ଖୁସି ହୋଇ ହସି ହସି ଗଡ଼ି ଯାଉଥିବାବେଳେ କିମ୍ବା ଦୁଃଖରେ ଭାଙ୍ଗି ପଡ଼ୁଥିବା ବେଳେ ମଧ୍ୟ ଠିକ୍ ସେହିପରି ନିଜର ଚିନ୍ତାଶକ୍ତି ଅକାମି ହୋଇଯାଏ ।

ଶାରୀରିକ ପରିବର୍ତ୍ତନ ମଣିଷର ମୁଖମଣ୍ଡଳରୁ ଜାଣି ହୁଏ । ଖୁବ୍ ରାଗିଲେ ମୁହଁ ଯେପରି ନାଲି ପଡ଼ିଯାଏ, ଖୁବ୍ ହସିଲେ ମଧ୍ୟ ସେହିପରି ହୁଏ । କଥା କହିଲାବେଳେ କଣ୍ଠରୁଦ୍ଧ ହୋଇଯାଏ, ସ୍ୱର କ୍ଷୀଣ ହୋଇ-ଯାଏ କିମ୍ବା ମଣିଷ ଖୁବ୍ ବଡ଼ପାଟିରେ କଥା କହେ । ମୁଣ୍ଡ ଉପରେ ଥିବା ବାଳ ଠିଆ ଠିଆ ହୋଇଯାଏ ଏବଂ ଜଣେ ଜଣେ ବାରମ୍ବାର ପରିସ୍ରା କରିବାପାଇଁ ଯାଇଥାଆନ୍ତି । ଚର୍ମର ଏପରି ପରିବର୍ତ୍ତନ ହୋଇଯାଏ ଯେ ଯଦି ସେଥିରେ ନିଆଁ ଚେଙ୍ଗି ଦିଆଯାଏ, କଣ୍ଟାରେ ଫୋଡ଼ାଯାଏ ବା ବିଜୁଳିତାର ଲଗାଇ ବିଜୁଳି ପ୍ରବାହିତ କରାଯାଏ, ତେବେ ସେ ତାହା ଜାଣିପାରେ ନାହିଁ । ମଣିଷ ଯେତେବେଳେ କୌଣସି କାରଣରୁ ଭୟ ପାଇଥାଏ ସେତେବେଳେ ତାର ମାଂସପେଶୀ ଦୃଢ଼ ହୋଇଯାଏ କିମ୍ବା ଥରଉଠେ ।

ମଣିଷ ଅତ୍ୟଧିକ ଭାବପ୍ରବଣ ହୋଇଗଲେ, ତାର ଶରୀରର ଅନ୍ତଃପ୍ରଦେଶରେ ଅନେକ ପରିବର୍ତ୍ତନ ଦେଖାଦିଏ । ସେଗୁଡ଼ିକ ଭିତରେ ତାର ରକ୍ତଚାପ, ହୃତ୍‌କ୍ରିୟା, ନିଃଶ୍ୱାସ, ପ୍ରଶ୍ୱାସ, ଜୀର୍ଣ୍ଣ ପ୍ରକ୍ରିୟା ଆଦି ପ୍ରଧାନ । ଶରୀରର ନଳ ରକ୍ତରେ ମଧ୍ୟ ରସାୟନିକ ପରିବର୍ତ୍ତନ ହୋଇଥାଏ ।

**ଭାବପ୍ରବଣତା କାହିଁକି ଦେଖାଯାଏ ?**

ମଣିଷ ଭାବପ୍ରବଣ କାହିଁକି ହୁଏ ଓ କିପରି ହୁଏ ଏ ବିଷୟରେ ନାନା ମତ । ମନସ୍ତାତ୍ତ୍ୱିକ ଜେମ୍ସ୍ ଓ ଲଞ୍ଜେ ଏ ବିଷୟରେ ଗୋଟିଏ ମତ ଦେଇଛନ୍ତି । ସେମାନଙ୍କ ମତରେ କୌଣସି ଏକ ଘଟଣାରେ ପ୍ରଥମେ ଶାରୀରିକ ପରିବର୍ତ୍ତନ ଏବଂ ତା'ପରେ ମାନସିକ ପ୍ରକ୍ରିୟା ଦେଖାଯାଇଥାଏ । ଧରିଯାଉ, ଆମେ ଗୋଟିଏ ସାପ ଦେଖିଲେ, ଅଭ୍ୟାସବଶତଃ ଆମେ ଦୌଡ଼ିବାକୁ ଆରମ୍ଭ କରିବା । ଏହା ହେଲା ଶାରୀରିକ ପ୍ରକ୍ରିୟା । ତା'ପରେ ଆମ ମନରେ ଭୟ ଜାତ ହେବ । ଏହା ଏକପ୍ରକାର ଭାବପ୍ରବଣତା ଓ ଏକ ମାନସିକ ପ୍ରକ୍ରିୟା । ପ୍ରତ୍ୟେକ ମଣିଷ ଦେହରେ ପ୍ରତିଫଳନ ବା ପ୍ରତିବର୍ତ୍ତି କ୍ରିୟା ସାଧିତ ହେଉଥାଏ । ଯେପରି ଆଖିରେ ଧୂଳିପଡ଼ିଲେ ବା ଶକ୍ତିଶାଳୀ ଆଲୋକ ପଡ଼ିଲେ, ଆଖି ଆପେ ଆପେ ବନ୍ଦ ହୋଇଯାଏ, ରସଗୋଲା କି ଅଙ୍ଗୁର ଦେଖିଲେ ଜିଭରୁ ଲାଳ ବାହାରେ ଠିକ୍ ସେହିପରି କୌଣସି ଏକ ଘଟଣା କି ଅଘଟଣ ଘଟିଗଲେ ପ୍ରଥମେ ରକ୍ତ ମାଂସରେ ପ୍ରତିବର୍ତ୍ତି ଦେଖାଦିଏ । ତା'ପରେ ମନରେ, ସେଥିରୁ ଆମର ଭାବପ୍ରବଣତା ଜାତ ହୁଏ ।

ଅନ୍ୟ ଏକ ପ୍ରକାର ମତବାଦ ଦେଇଛନ୍ତି ମନସ୍ତାତ୍ତ୍ୱିକ କ୍ୟାନନ୍ ଏବଂ ବାର୍ଡ୍ । ସେମାନଙ୍କ ମତରେ ମଣିଷର ମସ୍ତିଷ୍କ ଭିତରେ ଥିବା ଦୁଇଟି ଅଙ୍ଗ ଥାଲମସ୍ ଓ ହାଇପୋଥାଲମସ୍ ଭାବପ୍ରବଣତା ପାଇଁ ସମ୍ପୂର୍ଣ୍ଣରୂପେ ଦାୟୀ । କୌଣସି ଏକ ଘଟଣା ବା ଅଘଟଣ ଘଟିଗଲେ ଏହି ଦୁଇଟି ଅଙ୍ଗ ଏକାବେଳକେ ମଣିଷ ମନରେ ଭାବପ୍ରବଣତା ଏବଂ ଶରୀରର ରକ୍ତମାଂସରେ

ଚଞ୍ଚଳତା ସୃଷ୍ଟିକରନ୍ତି । ତେଣୁ ଆମେ ଯାପଟିଏ ଦେଖିଲେ କୋହିଲକେ ମାନସିକ କାର୍ଯ୍ୟ ଯଥା—ମନରେ ଭୟ ଓ ଶାରୀରିକ କାର୍ଯ୍ୟ ଯଥା— ଦୌଡ଼ିବା ଆରମ୍ଭ କରିଦେଉ । ପରୀକ୍ଷାରେ ପାସ୍ କରିଥିବା ଖବର ଶୁଣିବା ମାତ୍ରକେ ମନରେ ଆନନ୍ଦ ଲାଭ କରିବା ସଙ୍ଗେ ସଙ୍ଗେ ଆମେ ହସିଦେଉ ।

ତୃତୀୟ ମତବାଦଟି ହେଉଛି ପରିବେଶ ଉପରେ ନିର୍ଭର କରି ମଣିଷ ମନରେ ଭାବପ୍ରବଣତା ଜାତ ହୁଏ । ସିନେମା ଦେଖୁଥିବା ବେଳେ ଗୋଟିଏ ଦୃଶ୍ୟ ଦେଖି ଆମେ ଆନନ୍ଦରେ ହସି ହସି ଗଡ଼ିଯାଉ ଏବଂ ଅନ୍ୟ ଏକ ଦୃଶ୍ୟ ଦେଖି ଆମେ ଦୁଃଖରେ କାନ୍ଦିପକାଉ । ଯଦି କେତେ ପିଲାଙ୍କୁ ପାଣିରେ ବୁଡ଼ି ମରିଯାଇଥାଏ, ତେବେ ସେ ପାଣିକୁ ଦେଖିଲେ ଡରିଯାଏ । କିନ୍ତୁ ଯେତେବେଳେ ପାଣିରୁ ଭଡ଼ିଫୁଲ ତୋଳାଯାଏ ବା ମାଛ ଧରାଯାଏ, ସେତେବେଳେ ପାଣିକୁ ଦେଖିଲେ ଖୁସିଲାଗେ । ଠିକ୍ ସେହିପରି ଉଡ଼ାଜାହାଜ ଦୁର୍ଘଟଣା କଥା ଶୁଣିଲେ ମନରେ ଉଦ୍‌ବେଗ ହୁଏ; କିନ୍ତୁ ଉଡ଼ାଜାହାଜରେ ବସି ଦେଶବିଦେଶ ବୁଲିବା କଥା ଭାବିଲେ ମନ ଆନନ୍ଦରେ ପୂରିଯାଏ ।

ଚତୁର୍ଥ ମତବାଦଟି ମଣିଷର ସାଧାରଣ ଧାରଣା ଉପରେ ନିର୍ଭର କରେ । ପିଲାଟିଏ କାନ୍ଦୁଥିବାର ଦେଖିଲେ ଆମେ କହୁ ଯେ, ସେ ଦୁଃଖରେ ବା ଭୟପାଇ କାନ୍ଦୁଛି ଏବଂ ହସୁଥିବାର ଦେଖିଲେ ଆମେ କହୁ ଯେ ତା'ର ମନଟି ଖୁସିଅଛି । ତେଣୁ ଶରୀରର ଅବସ୍ଥାକୁ ଦେଖି ମନର ଅବସ୍ଥା ସମ୍ବନ୍ଧରେ ଧାରଣା କରିହୁଏ ।

ଭାବପ୍ରବଣତା ସମ୍ବନ୍ଧରେ ଅନ୍ୟ ଏକ ମତବାଦ ବିବର୍ତ୍ତନବାଦ ଉପରେ ନିର୍ଭର କରେ । ବିବର୍ତ୍ତନବାଦରୁ ଜଣାଯାଏ ଯେ ଯେତେବେଳେ ଜୀବଜଗତ ସୃଷ୍ଟି ହେଲା ସେତେବେଳେ 'ଏମିବା' ପରି ଏକକୋଷୀ ପ୍ରାଣୀ ପୃଥିବୀକୁ ଆସିଲେ । ତା'ପରେ ଦୁଇକୋଷୀ ପ୍ରାଣୀ ଏବଂ ଶେଷକୁ ମାଙ୍କଡ଼ ଭଳି ବହୁକୋଷୀ ପ୍ରାଣୀ ପୃଥିବୀରେ ଜନ୍ମଲାଭ କଲେ । ମାଙ୍କଡ଼ରୁ ମଣିଷ ହେଲା ବୋଲି ବୁଝାଯାଉଛି । ବିବର୍ତ୍ତନବାଦ ସମ୍ବନ୍ଧ ତାଲ ଦେଇ

ଭାବପ୍ରବଣତା ଗଠନରେ ବୋଲି ଗୋଟିଏ ପ୍ରକାର ମତବାଦ ଅଛି । ଏଥିରୁ ଜଣାଯାଏ ଯେ, ମଣିଷ ମନରେ ଭାବପ୍ରବଣତା ଯେପରି ଭାବରେ ପ୍ରକାଶ ପାଏ, ପଶୁ ପକ୍ଷୀମାନଙ୍କଠାରେ ତାହା ବହୁତ କମ୍ ପରିମାଣରେ ଦେଖାଯାଏ । ତେଣୁ ପ୍ରାଣୀଜଗତରେ ତଳସ୍ତରରୁ ଯେତେ ଉପରକୁ ଉପରକୁ ଯିବା ଭାବପ୍ରବଣତା ସେତିକ ବଢ଼ି ବଢ଼ି ଯାଉଥିବାର ଦେଖିବା ।

ଏହିଭଳି ଅନେକଗୁଡ଼ିଏ ମତବାଦ ଥିଲେ ମଧ୍ୟ ଏକଥା ସତ ଯେ ଭାବ-ପ୍ରବଣତାର ଏକ ଆକର୍ଷଣକାରୀ ଶକ୍ତି ଅଛି । ଏହା କେତେବେଳେ ଆନନ୍ଦ-ଦାୟକ ହୋଇପାରେ, କେତେବେଳେ ଅବା ଦୁଃଖଦାୟକ ହୋଇପାରେ । କେତେବେଳେ ହସାଇପାରେ ଅବା କନ୍ଦାଇପାରେ ଏବଂ ଏକଥା ମଧ୍ୟ ସତ ଯେ ବୟସ୍କମାନଙ୍କ ଅପେକ୍ଷା ଶିଶୁମାନେ ଏହାଦ୍ୱାରା ବେଶି ପ୍ରଭାବିତ ହୋଇଯାଆନ୍ତି । ଟିକିଏ କଥାରେ ପିଲାମାନେ ହସିଉଠନ୍ତି, କାନ୍ଦପକାନ୍ତି, ଭୂଇଁରେ ଗଡ଼ିଯାଆନ୍ତି ଅବା ରାଗିଯାଆନ୍ତି । କିନ୍ତୁ ବୟସ୍କମାନଙ୍କର ଦୀର୍ଘ ଜୀବନ ଭିତରେ ଅନେକ ଘାତ ପ୍ରତିଘାତ, ସୁଖ ଦୁଃଖ, ସଫଳତା ବିଫଳତା ଆସିଯାଇଥିବାରୁ ସେମାନେ ସଂଯମୀ ହୋଇଯାଇଥାନ୍ତି । ତେଣୁ ଭାବ-ପ୍ରବଣତା ସେମାନଙ୍କ ଉପରେ ଅଧିକ ପ୍ରଭାବ ପକାଇପାରେନାହିଁ ।

---

# ନିଦ୍ରା ଓ ସ୍ୱପ୍ନ

ମନୁଷ୍ୟ, ପଶୁପକ୍ଷୀ, ବୃକ୍ଷଲତା ଆଦି ଯେତେକ ଜୀବନ୍ତ ବସ୍ତୁ ଏବଂ ଯେଉଁମାନଙ୍କର ପ୍ରାଣ ଅଛି ସମସ୍ତେ ଶୋଇଥାଆନ୍ତି । କେହି କେହି ରାତିରେ ଶୁଅନ୍ତି ତ ଆଉ କେତେକ ଦିନ ବେଳେ । ଉଠିବା ଓ ଶୋଇଥିବା ଅବସ୍ଥାରେ ଯେଉଁ ପାର୍ଥକ୍ୟ ତାହା କେତେକ ପ୍ରାଣୀଙ୍କଠାରେ ଲକ୍ଷ୍ୟ କରିହୁଏ । ବିଶେଷତଃ ମଣିଷମାନଙ୍କ ପାଖରେ ଏହା ଖୁବ୍ ଭଲଭାବରେ ଲକ୍ଷ୍ୟ କରିହୁଏ; କାରଣ ମଣିଷ ଏକ ଉଚ୍ଚସ୍ତରୀୟ ପ୍ରାଣୀ । ଏହାର ମସ୍ତିଷ୍କ ଏବଂ ଅଙ୍ଗପ୍ରତ୍ୟଙ୍ଗ ଖୁବ୍ ଉନ୍ନତ । ତେଣୁ ଉଠିବା ଓ ଶୋଇବା ବେଳେ ଅଙ୍ଗପ୍ରତ୍ୟଙ୍ଗର ପାର୍ଥକ୍ୟ ପରିଷ୍କାର ଭାବରେ ଜାଣିହୁଏ ।

ମଣିଷମାନଙ୍କ ନିଦ୍ରା ସେମାନଙ୍କର ବୟସ, ବୃତ୍ତି ଓ ଶାରୀରିକ ଅବସ୍ଥା ଉପରେ ନିର୍ଭର କରେ । ଛୋଟ ପିଲାମାନେ ଦିନକ ଭିତରେ ଅଧିକ ସମୟ ଶୁଅନ୍ତି ଓ ବାରମ୍ବାର ଶୋଇଥାଆନ୍ତି । ଯୁବକ ଓ ବୃଦ୍ଧ ବ୍ୟକ୍ତିମାନେ ରାତିରେ ଶୋଇଥାଆନ୍ତି । ଅବଶ୍ୟ କେତେକ ବୃଦ୍ଧ ଓ ରୁଗ୍ଣ ବ୍ୟକ୍ତି ଦିନବେଳେ ମଧ୍ୟ ଶୁଅନ୍ତି । ସେହିପରି ଯେଉଁ କର୍ମଚାରୀମାନେ ରାତିରେ କାମ କରନ୍ତି ସେମାନେ ଦିନବେଳେ ଶୋଇଥାଆନ୍ତି । ପୁଣି ଶୋଇଲାବେଳେ କେହି କେହି ତଳମୁହାଁ ହୋଇ ଶୁଅନ୍ତି ତ କେହି କେହି ଉପରକୁ ମୁହଁ କରି, କଡ଼େଇ ହୋଇ ଏବଂ ଆଉ କେତେକ ଆଣ୍ଠୁ ମୁଣ୍ଡ ଏକାଠି କରି ଶୁଅନ୍ତି । ଶୋଇଗଲା ପରେ ଅନେକ ଲୋକ ଖୁବ୍ ଜୋର୍‌ରେ ଘୁଙ୍ଗୁଡ଼ି ମାରନ୍ତି, ଆଉ କେତେକ ମୋଟେ ଘୁଙ୍ଗୁଡ଼ି ମାରନ୍ତିନାହିଁ ।

ସାଧାରଣତଃ ଦୁଇପ୍ରକାର ନିଦ୍ରା ମଣିଷମାନଙ୍କ ନିକଟରେ ଦୃଷ୍ଟି-ଗୋଚର ହୁଏ । ସେଥିରୁ ଗୋଟିଏ ହେଲା ପ୍ରାକୃତିକ ଅନ୍ୟଟି କୃତ୍ରିମ

କୃତ୍ରିମ । ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ଯେଉଁମାନଙ୍କର ସ୍ୱାସ୍ଥ୍ୟ ଭଲ ସେମାନେ ସମସ୍ତେ ପ୍ରାକୃତିକ ନିଦ୍ରା ଯାଇଥାଆନ୍ତି । କିନ୍ତୁ ଯେଉଁମାନେ ଅସୁସ୍ଥ ସେମାନଙ୍କୁ ଔଷଧ ବା ଇଞ୍ଜେକ୍ସନ ଦେଇ ଶୁଆଇ ଦିଆଯାଏ । ଅତ୍ୟଧିକ ମଦ ପିଇଲେ ବା ନିଦ ବଟିକା ଖାଇଲେ, ହଠାତ୍ ଏକ ଦୁଃସମ୍ବାଦ ପାଇଲେ ଚେତା ହରାଇ ଲୋକମାନେ ଅସମୟରେ ଏବଂ ଅଧିକ ସମୟ ଧରି ଶୋଇଯାଆନ୍ତି । ଅତ୍ୟଧିକ ଶୋକ ହେଲେ ଏବଂ ଅଧିକ ଚିନ୍ତା କଲାବେଳେ ମଧ୍ୟ ଅନେକ ଲୋକ ଶୋଇଯାଆନ୍ତି । ଏହାକୁ କୃତ୍ରିମ ନିଦ୍ରା କୁହାଯାଏ ।

## ନିଦ୍ରା ନ ହେଲେ କ'ଣ ହେବ ?

ମଣିଷର ଖାଦ୍ୟ, ପାନୀୟ ଏବଂ ନିଃଶ୍ୱାସ ପ୍ରଶ୍ୱାସ ନେବା ଯେପରି ନିହାତି ଦରକାର, ନିଦ୍ରା ସେହିପରି ପ୍ରତ୍ୟେକଙ୍କର ନିହାତି ଦରକାର । ତେଣୁ ଏହା ଆମର ପ୍ରାଥମିକ ଆବଶ୍ୟକତାର ଅନ୍ତର୍ଭୁକ୍ତ । ମଣିଷ ନ ଖାଇଲେ କିଛିଦିନ ବଞ୍ଚିପାରିବ; କିନ୍ତୁ ଏକାଦିକ୍ରମେ କିଛିଦିନ ନ ଶୋଇଲେ ସେ ମରିଯିବାର ସମ୍ଭାବନା ଅଛି । ରୁଷିଆର ବୈଜ୍ଞାନିକମାନେ କୁକୁର ଉପରେ ପରୀକ୍ଷା କରି ଏହା ପ୍ରମାଣିତ କରି ଦେଇଛନ୍ତି । କୁକୁରମାନେ ନ ଶୋଇବା ପାଇଁ ସେମାନେ ବିଭିନ୍ନ ପ୍ରକାର ଉତ୍ତେଜକ ବ୍ୟବହାର କଲେ । ଦେଖାଗଲା ଯେ କୁକୁର ଛୁଆମାନେ ନ ଶୋଇ ନ ଶୋଇ ଚାରି ପାଞ୍ଚଦିନ ପରେ ମରିଗଲେ; କିନ୍ତୁ ବଡ଼ କୁକୁରମାନେ ୮।୧୦ ଦିନରୁ ୧୫।୨୦ ଦିନ ପର୍ଯ୍ୟନ୍ତ ଅନିଦ୍ରାକୁ ସମ୍ଭାଳି ନେଲେ । ତା'ପରେ ମରିଗଲେ ।

## ନିଦ୍ରା ବେଳେ ଶାରୀରିକ ପରିବର୍ତ୍ତନ

ମଣିଷମାନଙ୍କର ନିଦ୍ରା ସ୍ୱାଭାବିକ ବା କୃତ୍ରିମ, ଯାହା କିଛି ହେଲେ ମଧ୍ୟ ସବୁପ୍ରକାର ନିଦ୍ରାରେ ଗୋଟିଏ କଥା ଦେଖିବାକୁ ମିଳେ । ତାହା ହେଲା ଅଚେତନତା । ମଣିଷ ଶୋଇଗଲା ପରେ ସେ ଚେତା ହରାଏ । ତାହାଦ୍ୱାରା ସେ ବାହାରଜଗତର କିଛି ଦେଖିପାରେ ନାହିଁ, ଶୁଣିପାରେ

ନାହିଁ, ଗନ୍ଧ ବାରିପାରେ ନାହିଁ ବା ସ୍ପର୍ଶ କରିପାରେ ନାହିଁ । ତାଙ୍କ ଆଖି, କାନ, ନାକ, ଚର୍ମ, ଅଙ୍ଗପ୍ରତ୍ୟଙ୍ଗ ଓ ମସ୍ତିଷ୍କ ବିଶ୍ରାମ ପାଇଥାଏ । କେତେକଙ୍କର ଆଂଶିକ ଚେତନା ଲୋପ ପାଇଥିବାବେଳେ ବୃଦ୍ଧ ବା ରୋଗୀ ଲୋକଙ୍କର ସମ୍ପୂର୍ଣ୍ଣ ରୂପେ ଲୋପପାଇଥାଏ ଏବଂ ଅଙ୍ଗପ୍ରତ୍ୟଙ୍ଗ ଓ ମାଂସପେଶୀ ଶିଥିଳ ହୋଇଯାଏ । ସାଧାରଣତଃ ଏହି ଶିଥିଳତା ବେକ ପାଖରୁ ଆରମ୍ଭ ହୁଏ । ତେଣୁ ନିଦ ଲାଗିବା ବେଳେ ପ୍ରଥମେ ମୁଣ୍ଡ ଆଗକୁ ବା ପଛକୁ ଢଳିପଡ଼େ । ତା'ପରେ ଶରୀରର ଅନ୍ୟାନ୍ୟ ମାଂସପେଶୀ ଶିଥିଳ ହୋଇଯାଏ । ଅବଶ୍ୟ ଆଖି ଓ ମୂତ୍ରାଶୟର କେତେକ ମାଂସପେଶୀ କାର୍ଯ୍ୟକ୍ଷମ ଥାଏ ।

ନିଦ୍ରିତ ଅବସ୍ଥାରେ ଆଉ ଯେଉଁ କେତେକ ଶାରୀରିକ ପରିବର୍ତ୍ତନ ହୁଏ ତାହାହେଲା ହୃଦୟର ସ୍ପନ୍ଦନ । ଏହା ଦୁର୍ବଳ ଓ ଧୀର ହୋଇଯାଏ । ରକ୍ତଚାପ କମିଯାଏ । ମସ୍ତିଷ୍କ ଓ ଯକୃତ ଆଦିର ରକ୍ତ ପ୍ରବାହ ମନ୍ଥର ହୋଇଯାଏ । କେତେକ ଲାଳଗ୍ରନ୍ଥି କାର୍ଯ୍ୟକାରୀ କ୍ଷମତା ହରାଇଥିବାବେଳେ ମଧୁର ଗ୍ରନ୍ଥିର କାର୍ଯ୍ୟକାରିତା ବଢ଼ିଯାଇଥାଏ । ସେଥିପାଇଁ ଶୋଇଥିବା ବେଳେ ଶ୍ରେଷ୍ଠ ପିଲାଙ୍କ ମୁହଁରେ ବନ୍ଦ ବନ୍ଦ ହୋଇ ଝାଳ ଲାଗିଥିବାର ଦେଖାଯାଏ ।

କେତେକ ଶରୀରତତ୍ତ୍ୱବିତ୍ ନିଦ୍ରାକୁ ଏକ ଆୟ-ବ୍ୟୟ ହିସାବର ଅନ୍ତର୍ଭୁକ୍ତ କରିଛନ୍ତି । ସେମାନଙ୍କ ମତରେ ମଣିଷ ଜାଗ୍ରତ ଥିବାବେଳେ ପରିବେଶର ସମ୍ପର୍କରେ ଆସି ନିଜର ଶକ୍ତି ସାମର୍ଥ୍ୟ ବିନିଯୋଗ କରିଥାଏ । ବୁଲିବା, ଖେଳିବା, କାମ କରିବା ଦ୍ୱାରା ତାର ଶକ୍ତି ଖର୍ଚ୍ଚ ହୁଏ; କିନ୍ତୁ ଶୋଇଲାବେଳେ ଖର୍ଚ୍ଚ ହୋଇଥିବା ଶକ୍ତି ପୂରଣ ହୋଇଯାଏ । ଶୋଇବା ଅବସ୍ଥାରେ ରକ୍ତଚାପ କମିଯିବା, ଶରୀରର ପୁଷ୍ଟିସାଧନ ଓ ଅମ୍ଳଜାନ ଯୋଗାଣରେ ପରିବର୍ତ୍ତନ, ମାଂସପେଶୀ ଓ ଲାଳଗ୍ରନ୍ଥିର ଶିଥିଳତାଦ୍ୱାରା ଶରୀର ଯଥେଷ୍ଟ ବିଶ୍ରାମ ପାଇବା ସଙ୍ଗେ ସଙ୍ଗେ ଶକ୍ତି ସଂରକ୍ଷଣ କରିପାରିଥାଏ ।

## ସ୍ୱପ୍ନ କ'ଣ ?

ଆମେମାନେ ସମସ୍ତେ ଗାଢ଼ ନିଦରେ ଶୋଇଗଲେ ସ୍ୱପ୍ନ ଦେଖୁଛେ । କେତେବେଳେ ସ୍ୱପ୍ନ ଦେଖୁଛେ ଯେ ବ୍ୟବସାୟରେ ପ୍ରଚୁର ଲାଭ ହୋଇଛି; ଆମେ ଘରଦ୍ୱାର, କୋଠାବାଡ଼ି ନେଇ ଆରାମରେ ଅଛୁ । ଆଉ କେତେବେଳେ ସ୍ୱପ୍ନ ଦେଖୁ ଯେ ଆମେ ପରୀକ୍ଷାରେ ଫେଲ୍ ହୋଇଯାଇଛୁ, ତେଣୁ କାନ୍ଦି କାନ୍ଦି ଆମର ଆଖି ନାଲିପଡ଼ିଯାଇଛି । କେହି କେହି ସ୍ୱପ୍ନ ଦେଖନ୍ତି ଯେ ସେ ଖୁବ୍ ବଡ଼ ଚାକିରି ପାଇଛନ୍ତି, ତା'ପରେ ସୁନ୍ଦର ଘର କରିଛନ୍ତି, ଦାମିକା ମଟରଗାଡ଼ି କିଣି ସେଥିରେ ତାଙ୍କର ସୁନ୍ଦରୀ ସ୍ତ୍ରୀଙ୍କୁ ପାଖରେ ବସାଇ ବୁଲିଯାଉଛନ୍ତି । ଅନେ ମଧ୍ୟ ସ୍ୱପ୍ନରେ ଦେଖୁ ଯେ ଆମେ ନଦୀ ସ୍ରୋତରେ ଭାସିଯାଉଛୁ, ଗଛ ଉପରକୁ ବା କୋଠା ଉପରକୁ ଚଢ଼ୁଥିବା ବେଳେ ଖସିପଡ଼ୁଛୁ । ଅନେକ ସମୟରେ ସାପ, କାଠ, ବାଉଁଶ, ମାଛ, ଫୁଲ, ଫଳ ଆଦି ସ୍ୱପ୍ନରେ ଦେଖିଥାଉ ।

ମଣିଷମାନେ ଉପରୋକ୍ତ ପ୍ରକାର ଅନେକ ସ୍ୱପ୍ନ ଦେଖିଥାଆନ୍ତି । ସେହିପରି ପଶୁମାନେ ମଧ୍ୟ ସ୍ୱପ୍ନ ଦେଖିବାର ପ୍ରମାଣ ଅଛି । କୁକୁରମାନେ ସ୍ୱପ୍ନରେ ଦୌଡ଼ୁଥିବାର ବ୍ୟବହାର ଦେଖାନ୍ତି ।

କେତେକ ଲୋକ ରାତିରେ ଦେଖିଥିବା ସ୍ୱପ୍ନ ଭୁଲିଯାଆନ୍ତି । ଆଉ କେହି କେହି ଯଦି ହନୁମାନଙ୍କୁ, ଲଣ୍ଡାମୁଣ୍ଡିଆ ମଣିଷ, କାଳୀ ଠାକୁରାଣୀ ଆଦି ସ୍ୱପ୍ନରେ ଦେଖିଥାଆନ୍ତି ତେବେ ତାକୁ ଭୁଲନ୍ତିନାହିଁ, ବରଂ ତାକୁ ଅଶୁଭ ବୋଲି ବିଚାରନ୍ତି । ଅଶୁଭଜନିତ ପାପର ପ୍ରାୟଶ୍ଚିତ୍ତ କରିବାପାଇଁ ବ୍ରାହ୍ମଣ ଭୋଜନ, ସ୍ୱର୍ଣ୍ଣଦାନ, ଗୋଦାନ ଆଦି କରିଥାଆନ୍ତି । ଏହା ହେଲା କେତେକଙ୍କ ମନରେ ଅନ୍ଧବିଶ୍ୱାସ । କିନ୍ତୁ ମନୋବିଜ୍ଞାନବିତ୍ମାନେ ସ୍ୱପ୍ନକୁ ଏତେ ସାଧାରଣ ବା ସରଳ ଅର୍ଥରେ ନିଅନ୍ତି ନାହିଁ । ତାଙ୍କ ମତରେ ସ୍ୱପ୍ନ ହିଁ ମଣିଷ ମନ ଭିତରର ପ୍ରତିଫଳନ ମାତ୍ର । ଏହାର ମାଧ୍ୟମରେ ମନ-ଗହନର ବହୁତ କିଛି କଥା ଜାଣିହୁଏ ଏବଂ ଅନେକ ଜଟିଳ ସମସ୍ୟା

ସମାଧାନ କରିହୁଏ । ସେଥିପାଇଁ କୁହାଯାଇଛି ଯେ, "Dream is the royal road to unconscious." ଅର୍ଥାତ୍ ସ୍ୱପ୍ନ ଅଚେତନ ମନ ଭିତରକୁ ଏକ ରାଜପଥ ।

## ସ୍ୱପ୍ନ ବିଶ୍ଳେଷଣ

ପୃଥିବୀବିଖ୍ୟାତ ମନସ୍ତାତ୍ତ୍ୱିକ ସିଗମଣ୍ଡ ଫ୍ରଏଡ୍‌ଙ୍କ ନାମ ସମସ୍ତେ ଶୁଣିଥିବେ । ସେ ହେଉଛନ୍ତି ସ୍ୱପ୍ନକୁ ନୂତନ ରୂପ ଦେଇ ଜନସମାଜ ଆଗରେ ପ୍ରକାଶ କରିବାରେ ପ୍ରଥମ ଓ ପ୍ରଧାନ ବ୍ୟକ୍ତି । ଆଜିକାଲି ଯେଉଁ ସ୍ୱପ୍ନ ବିଶ୍ଳେଷଣ କଥା ଶୁଣୁଛେ ତାହା ତାଙ୍କଠାରୁ ଆରମ୍ଭ ହୋଇଥିଲା । ପ୍ରଥମେ ସେ ଅସ୍ୱାଭାବିକ ମନର ଭିତରକଥା ଜାଣିବା ପାଇଁ ସ୍ୱପ୍ନ ବିଶ୍ଳେଷଣ ଆରମ୍ଭ କରିଥିଲେ; କିନ୍ତୁ ପରେ ତାହା ସ୍ୱାଭାବିକ ମନର ବିଶ୍ଳେଷଣରେ ମଧ୍ୟ ସାହାଯ୍ୟକଲା ।

ସ୍ୱପ୍ନ ବିଶ୍ଳେଷଣରୁ ଜଣାଯାଏ ଯେ, ଆମ୍ଭେ ଯାହା ସ୍ୱପ୍ନରେ ଦେଖୁ ତାହା ଅନେକ ସମୟରେ ଆମର ମନ ଭିତରର ପ୍ରକୃତ ଅଭିଳାଷ ନୁହେଁ, ବରଂ ତାହା ବିଭିନ୍ନ ରୂପ ନେଇ ସ୍ୱପ୍ନରେ ଦେଖାଦିଏ । ସେ ସମ୍ପର୍କରେ ଫ୍ରଏଡ୍ କହିଛନ୍ତି ଯେ ମଣିଷର ସଚେତନ ଅବସ୍ଥାରେ ସମସ୍ତ ପ୍ରକାର ଅଭିଳାଷ ପୂରଣ କରିବା ସମ୍ଭବ ନୁହେଁ; କାରଣ ଆମ ପାଇଁ ଆର୍ଥିକ, ସାମାଜିକ ଓ ଅନ୍ୟ କେତେକ ପ୍ରତିବନ୍ଧକ ଅଛି । ତେଣୁ ସେହିସବୁ ଅଭିଳାଷ ରୁଦ୍ଧ ହୋଇ ଅଚେତନ ମନ ଭିତରକୁ ଚାଲିଯାଏ; ମଣିଷ ଶୋଇଗଲାପରେ ସେ ସବୁ କାମକରେ । ତେଣୁ ସ୍ୱପ୍ନ ଅଚେତନତା ଦ୍ୱାରା ପ୍ରଭାବିତ ହୋଇଥାଏ । ତାହା ଦ୍ୱାରା ଆମର ମାଂସପେଶୀ କାର୍ଯ୍ୟକାରୀ ହୋଇଥାଏ । ଏକଥା କେବଳ ବୈଦ୍ୟୁତିକ ଯନ୍ତ୍ର (E·E·G) ସାହାଯ୍ୟରେ ଜାଣିହୁଏ । ଉଦାହରଣ ସ୍ୱରୂପ ଆମ୍ଭେ ଗୋଟିଏ ଜଳଖିଆ ଦୋକାନରେ ଦେଖିଲେ ଯେ ଖୁବ୍ ଲୋଭନୀୟ ଖାଦ୍ୟଗୁଡ଼ିଏ ରଖାହୋଇଛି । କିନ୍ତୁ ଆମ ହାତରେ ପଇସା ନଥିବାରୁ ଆମେ ସେସବୁ କିଣି ଖାଇପାରୁନାହୁଁ । ତେଣୁ ଆମର ସେ ଖାଇବାର ଅଭିଳାଷ ସଚେତନ ମନ ଭିତରୁ ଅଚେତନ ମନ ଭିତରକୁ ଚାଲିଯାଇ

ଆବଦ୍ଧ ହୋଇ ରହେ । ଆମେ ଶୋଇଗଲେ ଯେତେବେଳେ ସଚେତନତା ଲୁପ୍ତ ହୋଇଯାଏ ସେତେବେଳେ ଅବରୁଦ୍ଧ ଅଭିଳାଷ ବାହାରକୁ ଖସି-ଆସେ । ତେଣୁ ଆମେ ସ୍ୱପ୍ନ ଦେଖୁ ଯେ ରଜଗୋଲା, ମିଠାଇ ଆଦି ଖାଇବାରେ ଲାଗିଛୁ । ତା'ର ପ୍ରତିକ୍ରିୟା-ସ୍ୱରୂପ ହାତ, ପାଟି ଓ ଜିଭରେ ଥିବା କାର୍ଯ୍ୟକାରୀ ସ୍ନାୟୁ ସକ୍ରିୟ ହୋଇଉଠେ ଏବଂ ଆମ ପାଟିରୁ ଲାଳ ବାହାରେ ।

ଆମ ମନର ଅଭିଳାଷ ଯାହା ତାହା ଅନେକ ସମୟରେ ଭିନ୍ନ ଭିନ୍ନ ରୂପରେ ଦେଖାଦିଏ । ତାହାକୁ ସ୍ୱପ୍ନର ପ୍ରତୀକ ବା ସଙ୍କେତ (Symbol) ବୋଲି କୁହାଯାଏ । ଏ ବିଷୟରେ କୌଣସି ସଠିକ ମତାମତ ନ ଥିଲେ ମଧ୍ୟ ଫ୍ରଏଡ଼ଙ୍କ ମତରେ ମଣିଷର ଭାବନା ପ୍ରତୀକଧର୍ମୀ । ପ୍ରତୀକଧର୍ମୀ ଭାବନା ଦ୍ୱାରା ଆମେ ଦେଖିପାରୁ, ଶୁଣିପାରୁ, ସ୍ପର୍ଶକରିପାରୁ ବା ସ୍ୱାଦ ବାରିପାରୁ । ଆମର କଳ୍ପନାରେ ଆମେ ଫୁଲଟିର କୋମଳତା ବା ପଥରର କର୍କଶତା ଅନୁଭବ କରିପାରୁ । ମଧ୍ୟ ନିତା ବା ଜିଭାଟି ଲମ୍ବା ବୋଲି ଜାଣିପାରୁ । ତେଣୁ ସ୍ୱପ୍ନରେ ଆମେ ପ୍ରକୃତ ଜିନିଷ ନ ଦେଖିଲେ ମଧ୍ୟ ତାହାର ପ୍ରତୀକ ଦେଖିପାରୁ । ଏହାର ଅନ୍ୟ ଏକ କାରଣ ହେଲା ମଣିଷର ସଭ୍ୟତାକୁ ଯଦି ଆମେ ଅନୁଶୀଳନ କରି ପଛକୁ ପଛକୁ ଯିବା ତେବେ ଦେଖିବା ଯେ ଆଦିମ ମଣିଷର ଭାବପ୍ରକାଶ ପ୍ରତୀକ ମାଧ୍ୟମରେ ହିଁ ହେଉଥିଲା । ତେଣୁ ସେହି ଆଦିମ ପ୍ରବୃତ୍ତି ମଣିଷର ଅଚେତନ ମନ ଭିତରେ ଅଛି, ସ୍ୱପ୍ନ ମାଧ୍ୟମରେ ତାହା ପ୍ରକଟିତ ହେଉଛି ।

## ସ୍ୱପ୍ନରୁ ବ୍ୟକ୍ତିତ୍ୱ ଜାଣିହୁଏ

ସ୍ୱପ୍ନ ବିଶ୍ଳେଷଣ ଫଳରେ ମଣିଷର ବ୍ୟକ୍ତିତ୍ୱ ସମ୍ବନ୍ଧରେ ଯଥେଷ୍ଟ ଧାରଣା ମିଳିଥାଏ । ଫ୍ରଏଡ଼ଙ୍କ ମତରେ ପ୍ରତ୍ୟେକ ମଣିଷର ବ୍ୟକ୍ତିତ୍ୱ ସ୍ଥାନିକ ଦୃଷ୍ଟିରୁ ସଚେତନ, ଅଚେତନ ଓ ଅବଚେତନ ହୋଇଥାଏ । ଆମର ବର୍ତ୍ତମାନର କାର୍ଯ୍ୟକଳାପ ସଚେତନତାର ଅନ୍ତର୍ଭୁକ୍ତ । ଠିକ୍ ପରମୁହୂର୍ତ୍ତକୁ ଗଲେ ବର୍ତ୍ତମାନର କାର୍ଯ୍ୟ ଅତୀତ ହୋଇ ଅବଚେତନ

ଏବଂ କ୍ରମଶଃ ତାହା ଅଚେତନ ମନ ଭିତରକୁ ଚାଲିଯାଏ; ପୁଣି ନୂଆ କଥା ସଚେତନ ମନ ଭିତରେ ସ୍ଥାନ ପାଏ। ମଣିଷର ଆଉ ଏକପ୍ରକାର ବ୍ୟକ୍ତିତ୍ୱ ଅଛି ଯାହାକୁ ଗତିଶୀଳ ବ୍ୟକ୍ତିତ୍ୱ ବୋଲି କୁହାଯାଏ। ତା ଭିତରେ ଅଛି ଇଡ୍, ଇଗୋ ଓ ସୁପର୍ ଇଗୋ। ଶିଶୁଜନ୍ମ ବା ମୌଳିକ ବ୍ୟକ୍ତିତ୍ୱକୁ ଫ୍ରଏଡ୍ 'ଇଡ୍' ବୋଲି କହିଛନ୍ତି। ଆଉ କେତେକ ଏହାକୁ ଅତି ଆଦିମ ପ୍ରବୃତ୍ତି ବୋଲି ବର୍ଣ୍ଣନା କରିଛନ୍ତି। ଇଗୋ ମଣିଷ ମନ ଭିତରେ ଥିବା ଅହଂଭାବ ସହିତ ଜଡ଼ିତ। ମଣିଷର ଜୀବନ ଇଡ୍‌ରୁ ଆରମ୍ଭ ହେଲେ ମଧ୍ୟ ବୟସ ବଢ଼ିବା ସଙ୍ଗେ ସଙ୍ଗେ ମଣିଷର ଇଗୋ ପ୍ରବୃତ୍ତି ଜାତ ହୁଏ। ତାଙ୍କ ଜୀବନର ଆରମ୍ଭ, ବଞ୍ଚିବାର ଯଥାର୍ଥତା ଓ ମରଣ ବିଷୟରେ ଭାବିପାରେ। ନିଜର ସାଂସାରିକ ଜୀବନର ମୂଲ୍ୟ ସେ ପରଲୋକର ପ୍ରଭାବକୁ ଜାଣିପାରିଥାଏ। ତେଣୁ ମଣିଷର ସାମାଜିକ ଚେତନା ସହିତ ଏହା ଜଡ଼ିତ। ସୁପର୍ ଇଗୋ ମଣିଷକୁ ଅତିମାନବତା ଆଡ଼କୁ ଟାଣିନିଏ। ଏହାଦ୍ୱାରା ମଣିଷ ଧାର୍ମିକ, ନୀତିବାଦୀ, ଦୟାଳୁ, ବିବେକବାନ୍; ଅନ୍ୟ ଶବ୍ଦରେ କହିଲେ ଏକ ସୁପୁରୁଷରେ ପରିଣତ ହୁଏ।

ଫ୍ରଏଡ୍‌ଙ୍କ ବ୍ୟତୀତ ଆଉ କେତେକ ବ୍ୟକ୍ତି ମଧ୍ୟ ସ୍ୱପ୍ନ ବିଷୟରେ ମତାମତ ଦେଇଯାଇଛନ୍ତି। କେତେକ ଶରୀରତତ୍ତ୍ୱବିତ୍ କହନ୍ତି ଯେ ମସ୍ତିଷ୍କ ଭିତରେ ଥିବା ସ୍ନାୟୁଗୁଡ଼ିକ ଭିତରେ ଯଦି କେତେବେଳେ ବିଶୃଙ୍ଖଳା ଦେଖାଦିଏ ସେତେବେଳେ ଆମେ ସ୍ୱପ୍ନ ଦେଖୁ। କିନ୍ତୁ ଫ୍ରଏଡ୍‌ଙ୍କର ବିଶେଷତ୍ୱ ହେଉଛି ସଙ୍କେତଧର୍ମୀ ସ୍ୱପ୍ନ। ମଣିଷର ଇଚ୍ଛା ଛଦ୍ମ ରୂପରେ ସ୍ୱପ୍ନ ମାଧ୍ୟମରେ ପୂରଣ ହୁଏ। ସେଥିପାଇଁ ମଣିଷ ନିଦରୁ ଉଠି ସ୍ୱପ୍ନ ବିଷୟରେ ଯାହା ବର୍ଣ୍ଣନା କରେ ତାହା ତାର ମନଗଢ଼ା। ସେଥିରେ ତାର ମନ ଭିତରର କୌଣସି ଅଭିଳାଷ ପ୍ରତିଫଳିତ ହୁଏନାହିଁ। ସ୍ୱପ୍ନ ବିଶ୍ଳେଷଣ କଲେ ତାର ପ୍ରକୃତ ମନକଥା ଜଣାପଡ଼େ।

## ସ୍ୱପ୍ନ କ'ଣ ସତ୍ୟ ?

ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ ଆମେ ବେଳେ ବେଳେ ଯାହା ସ୍ୱପ୍ନରେ ଦେଖୁ ସେଥିରେ ସତ୍ୟତା କ'ଣ ଅଛି ? କେତେକ ମନୋବିଜ୍ଞାନବିତ୍

କହନ୍ତି ଯେ ମଣିଷର ଦିବାସ୍ୱପ୍ନ ଯେପରି ସତ୍ୟ ଓ ଏହାଦ୍ୱାରା କେତେକ ଇଚ୍ଛା ପୂରଣ ହୋଇଥାଏ, ସେହିପରି ରାତି ସ୍ୱପ୍ନ ମଧ୍ୟ ତାର କେତେକ ଇଚ୍ଛା ପୂରଣ କରେ । ସ୍ୱପ୍ନ ସମ୍ପର୍କୀୟ ଫ୍ରଏଡ଼ଙ୍କର ସମସ୍ତ ତଥ୍ୟ କେବଳ ମତବାଦ ଉପରେ ପର୍ଯ୍ୟବସିତ । କିନ୍ତୁ ପରୀକ୍ଷଣ ମାଧ୍ୟମରେ ଏହାର କୌଣସି ପ୍ରମାଣ ଦେଖାଯାଇନାହିଁ ।

ସ୍ୱପ୍ନରେ ଏପରି ମଧ୍ୟ ଦେଖାଯାଏ ଯେ ଜଣେ ଶୋଇଥିବାବେଳେ ଯାହାକୁ ସ୍ୱପ୍ନ ଦେଖେ, ଅପରବ୍ୟକ୍ତି ଠିକ୍ ସେତିକବେଳେ ପ୍ରଥମ ବ୍ୟକ୍ତିକୁ ସ୍ୱପ୍ନରେ ଦେଖିଥାଏ । ବେଳେବେଳେ ଦୁଇଜଣ ଏକପ୍ରକାର ସ୍ୱପ୍ନ ଦେଖି- ଥାନ୍ତି । ସ୍ୱପ୍ନ ମାଧ୍ୟମରେ ଜଟିଳ ପ୍ରଶ୍ନ ସମାଧାନ ହୋଇଥାଏ । ଥରେ ଜଣେ ବ୍ୟକ୍ତି ରେଳଗାଡ଼ିରେ ଯାଉଥିବାବେଳେ ଗାଢ଼ ନିଦରେ ଶୋଇ ସ୍ୱପ୍ନ ଦେଖିଲେ । ସେ ସ୍ୱପ୍ନରେ ଏକ ସାରଗର୍ଭକ ଭାଷଣ ଦେଲେ ଏବଂ ପରେ ପୁଣି ଶୋଇଗଲେ । ନିଦରୁ ଉଠିଲା ପରେ ସେ କ ସ୍ୱପ୍ନ ଦେଖିଥିଲେ ବୋଲି ପଚରାଯିବାରୁ ଷ୍ଟେସନ୍ ଉପରେ ସେ ସ୍ୱପ୍ନ ଦେଖି ନଥିଲେ ବୋଲି କହିଲେ । ସେ ବ୍ୟକ୍ତି ଜଣେ ଓକିଲ ଏବଂ କୋର୍ଟରେ ସାକ୍ଷ୍ୟଦେବାକୁ ଯାଉଥିଲେ । ଏପରି କେତେକ ସ୍ୱପ୍ନକୁ ଆଖି ଆଗରେ ରଖି ଆମେରିକାର ଗବେଷକମାନେ ଏହାକୁ ଅଜ୍ଞାତ ମନସ୍ତାତ୍ତ୍ୱିକ କାରଣ (ପାରା ସାଇ- କୋଲୋଜି ବା ଟେଲିପାଥି) ବୋଲି କହୁଥାଆନ୍ତି । ସେମାନେ ଏପରି କେତେକ ସ୍ୱପ୍ନକୁ E.S.P. (Extra Sensory Perception) ଜନିତ ଘଟଣା ବୋଲି କହୁଥାନ୍ତି । କିନ୍ତୁ ବୃଟିଶର ଶରୀରତତ୍ତ୍ୱବିତ୍‌ମାନେ ସ୍ୱପ୍ନକୁ ଭିନ୍ନ ଦୃଷ୍ଟିରେ ଦେଖନ୍ତି । ସେମାନେ କହନ୍ତି ଯେ, ସ୍ୱପ୍ନ ହେଉଛି ଶୋଇଥିବା ବ୍ୟକ୍ତିର ସଚେତନତାର ଏକ ସ୍ୱତନ୍ତ୍ର ରୂପ । ମଣିଷ ଶୋଇଗଲେ ମଧ୍ୟ ତା'ର ମସ୍ତିଷ୍କର ସ୍ନାୟୁ ହଠାତ୍ ଶୋଇଯାଏ ନାହିଁ । ତା' ଭିତରେ ଥିବା ବୈଦ୍ୟୁତିକ ସ୍ପନ୍ଦନାତ୍ମକ ତରଙ୍ଗର ଗତିଶୀଳତା ବା ଉଷ୍ଣତା କ୍ରମଶଃ ହ୍ରାସ ପାଇ ଆସୁଥାଏ । ଯେତେବେଳେ ଆମେ ସ୍ୱପ୍ନ ଦେଖୁ । ତାହାର ଗତିଶୀଳତା ଯେତେବେଳେ ସମ୍ପୂର୍ଣ୍ଣ ହ୍ରାସ ପାଏ ସେତେବେଳେ ଆମେ ଗାଢ଼ ନିଦରେ ଶୋଇଥାଉ ଏବଂ ଆଉ ସ୍ୱପ୍ନ ଦେଖୁନାହୁଁ । ପୁଣି

ଯେତେବେଳେ ନିଦ ଭାଙ୍ଗିବାର ବେଳ ଆସିଥାଏ, ଠିକ୍ ତାର କିଛି ସମୟ ପୂର୍ବରୁ ଆମେ ସ୍ୱପ୍ନ ଦେଖୁ । ସେତେବେଳକୁ ସ୍ନାୟୁଗୁଡ଼ିକ ପୁଣି କାର୍ଯ୍ୟ ଆରମ୍ଭ କରିଦେଇଥାଆନ୍ତି । ସେଥିପାଇଁ ଆମେ ଚେଇଁଥିଲାବେଳେ ଯାହା ଭାବିଥାଉ ସ୍ୱପ୍ନରେ ତାହା ଭିନ୍ନ ରୂପରେ ଦେଖାଦିଏ । ଇଭାନ ସେଚେନୋଭ୍ ନାମକ ଜଣେ ରୁଷୀୟ ପ୍ରକୃତିବିଦ୍ୟାବିତ୍ କହନ୍ତି ଯେ— "Dreams are often impossible combinations of possible impressions." (ସାଧାରଣତଃ ସ୍ୱପ୍ନ ସମ୍ଭାବ୍ୟ ଧାରଣାର ଅସମ୍ଭବ ସଂଯୋଗ) ।

ବର୍ତ୍ତମାନ ଭାରତରେ ମଧ୍ୟ ସ୍ୱପ୍ନ ବିଷୟରେ ଗବେଷଣା ଚାଲିଛି । ସେହି ଗବେଷଣାରୁ ଆମେ ଅନେକ କିଛି ତଥ୍ୟ ପାଇବୁ ବୋଲି ଆଶା କରାଯାଏ ।

# ବ୍ୟକ୍ତିତ୍ୱ ଓ ତାର ବୈଶିଷ୍ଟ୍ୟ

ପ୍ରତ୍ୟେକ ବ୍ୟକ୍ତିର ବ୍ୟକ୍ତିତ୍ୱ (Personality) ଅଛି । କିନ୍ତୁ ବ୍ୟକ୍ତିତ୍ୱ କ'ଣ ? ଏ ବିଷୟରେ ନାନା ମୁନିଙ୍କର ନାନା ମତ । ଗ୍ରୀକ୍ ସଭ୍ୟତାରେ ବ୍ୟକ୍ତିତ୍ୱକୁ ଅଦ୍ଭୁତ ପ୍ରକାର ବୁଝୁଥିଲେ । ଥିଏଟର ବା ଯାତ୍ରା ପାର୍ଟିରେ ଜଣେ ଜଣେ ଲୋକ ଗୋଟିଏ ଗୋଟିଏ ଚରିତ୍ର ଦେଖାଇବା ପାଇଁ ମୁଖା ପିନ୍ଧି ବାହାରନ୍ତି—ଠିକ୍ ଯେପରି ଆମର ରାମଲୀଳା ସୁଆଙ୍ଗରେ ଜଣେ ଲୋକ ଗୋଟିଏ ମୁଖା ପିନ୍ଧି ରାବଣ ହୁଏ, ଅନ୍ୟମାନେ ଆଉ ଗୋଟେ ଗୋଟେ ମୁଖା ପିନ୍ଧି ହନୁମାନ, ସୁଗ୍ରୀବ, ତାଡ଼କା ରାକ୍ଷସୀ ଆଦି ହୋଇଥାଆନ୍ତି । ସେମାନଙ୍କର ମୁଖାପିନ୍ଧା ଅବସ୍ଥାକୁ ଗ୍ରୀକ୍‌ମାନଙ୍କ ମତରେ ବ୍ୟକ୍ତିତ୍ୱ ବୋଲି ବୁଝାଯାଏ ।

ସାଧାରଣ ଲୋକଙ୍କ ଦୃଷ୍ଟିରେ ବ୍ୟକ୍ତିତ୍ୱ ଭିନ୍ନ ପ୍ରକାର । ଯଦି କେହି ଭଲ ପୋଷାକ ପିନ୍ଧିଲା, ଭଲ ଘର କଲା କାର୍, ରେଡ଼ିଓ, ଟେଲିଭିଜନ, ଟେଲିଫୋନ୍ ଆଦି ରଖିପାରିଲା, କିମ୍ବା ବହୁତ କଥା କହିପାରିଲା, ତେବେ ଲୋକେ କହନ୍ତି ତାର ଭଲ ବ୍ୟକ୍ତିତ୍ୱ ଅଛି । କୌଣସି ପୁରୁଷ ବା ସ୍ତ୍ରୀ ଦେଖିବାକୁ ସୁନ୍ଦର ହେଲେ ତାର ମଧ୍ୟ ଭଲ ବ୍ୟକ୍ତିତ୍ୱ ଅଛି ବୋଲି କେହି କେହି କହିଥାଆନ୍ତି । ଅବଶ୍ୟ ବ୍ୟକ୍ତି ମାତ୍ରକେ ବ୍ୟକ୍ତିତ୍ୱ ଅଛି—କିନ୍ତୁ ତାହା ଭଲ ପୋଷାକ ପିନ୍ଧିବା ଦ୍ୱାରା ପରିସ୍ଫୁଟ ହୁଏନାହିଁ ।

ବ୍ୟକ୍ତିତ୍ୱ ମଣିଷର ବ୍ୟବହାର ଉପରେ ନିର୍ଭର କରେ । ସକାଳୁ ସଞ୍ଜ ଯାଏଁ ଅର୍ଥାତ୍ ନିଦରୁ ଉଠି ପୁଣି ଶୋଇବା ଭିତରେ ସେ ଯାହା ଯାହା କରେ ତାହା ତା'ର ବ୍ୟକ୍ତିତ୍ୱର ପରିଚୟ ଦେଇଥାଏ । କେତେକ ସମାଜ-ବିଜ୍ଞାନବିତ୍‌ଙ୍କ ମତରେ ପରିବର୍ତ୍ତନଶୀଳ ସମାଜ ଓ ପରିବେଶ ସହିତ ତାଳ

ମିଳାଇ ଗ୍ରହୁଥିବା ବ୍ୟକ୍ତିର ଚରିତ୍ରକୁ ତାର ବ୍ୟକ୍ତିତ୍ୱ ବୋଲି କୁହାଯାଏ । ତେବେ ସେ ଯାହା ହେଉନା କାହିଁକି, ପ୍ରତ୍ୟେକ ବ୍ୟକ୍ତିର ବ୍ୟକ୍ତିତ୍ୱ ସ୍ୱତନ୍ତ୍ର ଏବଂ ବ୍ୟକ୍ତିତ୍ୱ ଭିତରେ ଅନେକ ତାରତମ୍ୟ ଓ ବୈଶିଷ୍ଟ୍ୟ ଥାଏ । ସେଥି ମଧ୍ୟରୁ କେତୋଟି ବୈଶିଷ୍ଟ୍ୟ ଏଠାରେ ଆଲୋଚନା କରାଯାଉଅଛି ।

## ଦୁଃଖ ପାଇ ସୁଖୀ ଓ ଦୁଃଖ ଦେଇ ସୁଖୀ

ମଣିଷ ମନ ଭିତରେ ପରସ୍ପରବିରୋଧୀ ଅନେକ ପ୍ରବୃତ୍ତି ଥାଏ । ସେଥିରୁ ଗୋଟିଏ ଯଦି ମନ ଭିତରେ ସ୍ଥାନ ପାଇଲା ଅନ୍ୟଟି ସେଠାରେ ରହିପାରେ ନାହିଁ । ଅବଶ୍ୟ ପରିବେଷ୍ଟନୀର ପ୍ରଭାବରେ ଗୋଟିକର ପରିବର୍ତ୍ତନରେ ଅନ୍ୟଟି ଆସି ମନ ଭିତରେ ପ୍ରବେଶ କରିପାରେ; କିନ୍ତୁ ଏକ ସମୟରେ ଦୁଇଟିଯାକ ରହିପାରନ୍ତି ନାହିଁ । ଏହିପରି ଅହି-ନକୁଳ ସମ୍ପର୍କ ଥିବା ଦୁଇଟି ଚରିତ୍ର ହେଲା ମାସୋକିଜମ୍ (ନିଜ ଦୁଃଖରେ ସୁଖୀ) ଓ ସ୍ୟାଡ଼ିଜମ୍ (ପରଦୁଃଖରେ ସୁଖୀ) ।

ପ୍ରଥମେ ମାସୋକିଜମ୍ (Masochism) କଥା ଦେଖାଯାଉ । ମାସୋକିଜମ୍‌ର ଅର୍ଥ ହେଲା ନିଜ ଶରୀରକୁ ଯନ୍ତ୍ରଣା ଦେଇ ଆନନ୍ଦ ଲାଭ କରିପାରିବା ଏବଂ ଯେଉଁମାନେ ସେପରି କରନ୍ତି ସେମାନଙ୍କୁ ମାସୋକିଷ୍ଟ କୁହାଯାଏ । ପୃଥିବୀରେ ଉଭୟ ନାରୀ ଓ ପୁରୁଷ ଏହି ଚରିତ୍ରରୁ ମୁକ୍ତ ନୁହନ୍ତି; କିନ୍ତୁ ନାରୀମାନଙ୍କର କେତେକ ଯନ୍ତ୍ରଣା ଏପରି ଦହନ୍ତି ହୁଏ ହୋଇପାଏ ଯେ ତାହା ସେମାନଙ୍କୁ ବିଶେଷ ବାଧେନାହିଁ । ଜଣେ ନାରୀ କହିଥିଲେ, "ଯେଉଁ ସ୍ୱାମୀ ନିଜ ସ୍ତ୍ରୀ ଉପରେ ଆକ୍ରମଣ କରିପାରେ ନାହିଁ ଏବଂ ତାର ଅଙ୍ଗପ୍ରତ୍ୟଙ୍ଗକୁ ଚଗ୍ଚଗ କରିପାରେ ନାହିଁ ସେ ପ୍ରକୃତରେ ପ୍ରେମ କ'ଣ ଜାଣେ ନାହିଁ ।" ଅନ୍ୟ ଏକ ମହିଳା ତାଙ୍କ ସ୍ୱାମୀଙ୍କ ବିଷୟରେ କହୁଥିଲେ ଯେ - ଯେଉଁ ଲୋକ ସାମାନ୍ୟ ଯନ୍ତ୍ରଣା ଦେଇପାରେନାହିଁ ତାକୁ ସ୍ୱାମୀ ବୋଲି ଗ୍ରହଣ କରିହେବ ନପାରେ । ପ୍ରେମ ବ୍ୟାପାରରେ ପୁରୁଷମାନେ ଅତ୍ୟଧିକ କଷ୍ଟ ସ୍ୱୀକାର କରିଥାଆନ୍ତି । ସେହିପରି ପ୍ରିୟତମାର ପାଖେ ପାଖେ ଥାଇ, ସମସ୍ତ ଆପଦ-ବିପଦକୁ ସହ୍ୟ କରି ଏବଂ ନିଜର ଇଚ୍ଛା

ବିରୁଦ୍ଧରେ ଅନେକ କାର୍ଯ୍ୟ କରି ଅନେକ ବ୍ୟକ୍ତି ସ୍ତ୍ରୀ ସ୍ୱାମୀର ଅନୁଗ୍ରହକୁ ସୃଷ୍ଟି କରିଥାଆନ୍ତି । ଏଥିପାଇଁ ପୁରୁଷ ପଶୁମାନଙ୍କ ମଧ୍ୟରେ ଖଣ୍ଡଯୁଦ୍ଧ ଲଢ଼ି ରକ୍ତାକ୍ତ ହେବା ବା ମୃତ୍ୟୁବରଣ କରିବାର ଯଥେଷ୍ଟ ଉଦାହରଣ ଅଛି । ସାଧାରଣ ନାଗରିକଙ୍କ ଭିତରେ ଶ୍ରମିକ, କୃଷକ, ସୈନିକ ଆଦି ଯେଉଁମାନେ ଦିନରାତି ଖରା ବାକରରେ କଠିନ ପରିଶ୍ରମ କରି ଅନ୍ୟର ସେବା କରନ୍ତି ସେମାନଙ୍କୁ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇପାରେ ।

ଉପରୋକ୍ତ ଉଦାହରଣମାନଙ୍କରେ ଯେଉଁ ମାସୋଚିଜିମ୍‌ର ବର୍ଣ୍ଣନା କରାଯାଇଅଛି, ତାର ସ୍ରଷ୍ଟା ହେଉଛନ୍ତି ଊନବିଂଶ ଶତାବ୍ଦୀର ଅଷ୍ଟ୍ରିଆ ଦେଶର ଜଣେ ଔପନ୍ୟାସିକ ଯାହାଙ୍କ ନାମ ହେଉଛି ସାକେର-ମାସୋକ (Sacher-Masoch) । ସେ "ଦି ଭେନସ୍ ଇନ୍ ଦି ଫର୍ କୋଟସ୍" (The Venus in the Fur Coats) ନାମକ ଉପନ୍ୟାସରେ ଏପରି ଗୋଟିଏ ଚରିତ୍ର ସୃଷ୍ଟି କଲେ, ଯେ କି ପ୍ରଣୟିନୀଠାରୁ ଯନ୍ତ୍ରଣା ପାଇ ମଧ୍ୟ ଅତ୍ୟଧିକ ଆନନ୍ଦ ଲାଭ କରିଥିଲା । ଦାର୍ଶନିକ ଆରିଷ୍ଟୋଟଲଙ୍କ-ଠାରୁ ଆରମ୍ଭ କରି ବାର୍ଟ୍ରାଣ୍ଡ ରସେଲ୍‌ଙ୍କ ପର୍ଯ୍ୟନ୍ତ ବର୍ଣ୍ଣନା କରିଯାଇଛନ୍ତି ଯେ ଅସୁବିଧା ଯନ୍ତ୍ରଣାକୁ ଏଡ଼େଇ ଦେଇ ଆନନ୍ଦରେ ରହିବାକୁ ଇଚ୍ଛା କରିବା ପ୍ରତ୍ୟେକ ମଣିଷର ଏକ ଅନ୍ତର୍ନିହିତ ଅଭିଳାଷ । କିନ୍ତୁ ତାହା ପରିବର୍ତ୍ତେ କିଏ କିଏ ଦୁଃଖ, କଷ୍ଟ ଓ ପରାଭବ ସହି ଆନନ୍ଦଲାଭ କରିବାକୁ ମଧ୍ୟ ମଣିଷ କାହିଁକି ଇଚ୍ଛା କରେ ? ଜଣେକ ମନସ୍ତାତ୍ତ୍ୱିକ ଥିଓଡ଼ର ରିକ୍ (Theodor Reik) ତାଙ୍କର "ମାସୋଚିଜିମ୍ ଇନ୍ ମଡ଼ର୍ଣ୍ଣ ମ୍ୟାନ" (Masochism in Modern Man) ନାମକ ବହିରେ ଏହିପରି ଏକ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଲେଖିଛନ୍ତି ଯେ, ଅନେକ ମଣିଷ ନିଜର ଜ୍ଞାତସାରରେ ଦୁଃଖଠାରୁ ଦୂରରେ ରହିବାକୁ ଇଚ୍ଛାକରିଥାଆନ୍ତି । କିନ୍ତୁ ସେମାନଙ୍କର ଅଜ୍ଞାତରେ (ଅବଚେତନ ମନରେ) ଦୁଃଖ ପାଇବା ପାଇଁ ଏକ ଆଗ୍ରହ ଥାଏ ।

ସାକେର-ମାସୋକ୍ କେବେହେଲେ ମନସ୍ତାତ୍ତ୍ୱିକ ନଥିଲେ । କିନ୍ତୁ ସେ ତାଙ୍କ ଉପନ୍ୟାସରେ ବର୍ଣ୍ଣନା କରିଥିବା ଚରିତ୍ରକୁ କ୍ରାଫ୍ଟ-ଏବିଙ୍ଗ୍

(Kraft Ebing) ନାମକ ଜଣେ ଜର୍ମାନ ଯୌନତତ୍ତ୍ୱବିତ୍ ପଣ୍ଡିତ ସମସ୍ତ ପ୍ରକାର ଆତ୍ମକୈନ୍ଦ୍ରିକ ଯୌନବିପର୍ଯ୍ୟସ୍ତ ବ୍ୟକ୍ତିତ୍ୱକୁ ମାସୋକିଜିମ୍ ନାମରେ ଅଭିହିତ କରିଥିଲେ । ପରେ ମନସ୍ତାତ୍ତ୍ୱିକ କ୍ଷେତ୍ରରେ ପରିଭବ ସହି ଆନନ୍ଦ ଲାଭ କରୁଥିବା ଯୌନ-ବିପର୍ଯ୍ୟସ୍ତ ବ୍ୟକ୍ତିତ୍ୱକୁ ଓ ପରିଶେଷରେ ବ୍ୟକ୍ତିତ୍ୱକୁ ମଧ୍ୟ ମାସୋକିଜିମ୍ ନାମରେ ନାମିତ କରାଗଲା । ସାଧାରଣ ବ୍ୟକ୍ତିତ୍ୱ ପ୍ରତି ମାସୋକିଜିମ୍ ଲାଗୁକରିବାର ଉଦ୍ଦେଶ୍ୟ ହେଉଛି ଯେ, ପ୍ରତ୍ୟେକ ମଣିଷ ନିକଟରେ କିଛି ନା କିଛି ମାସୋକିଷ୍ଟିକ୍ ଚରିତ ଅଛି । ଉଦାହରଣସ୍ୱରୂପ ଖିଆଲରେ କୋଟ୍ ପିନ୍ଧି ନାଇ ଭିଡ଼ିବା, ମୁନିଆ ଯୋତା ଓ ଚପା ପୋଷାକ ପିନ୍ଧିବା, ଦାନ୍ତଖୁଣ୍ଟିବା, ଲମ୍ବାବାଳ ରଖିବା ଇତ୍ୟାଦି । ଏହାଦ୍ୱାରା କେତେକ ବ୍ୟକ୍ତି ଯଥେଷ୍ଟ ଆନନ୍ଦ ପାଇଥାଆନ୍ତି । କହିବା ବାହୁଲ୍ୟ ଯେ, ପ୍ରତ୍ୟେକ ଦମ୍ପତି ଭିତରେ ଯଦି ଜଣେ ମାସୋକିଷ୍ଟ ଓ ଅନ୍ୟ ଜଣକ ସ୍ୟାଡ଼ିଷ୍ଟ ହୋଇଥାଆନ୍ତି ତେବେ ସେମାନେ ଖୁବ୍ ଆନନ୍ଦରେ ସମୟ କଟାଇପାରନ୍ତି । ସାମାଜିକ ଚଳଣୀ ଅନୁଯାୟୀ ଭାରତୀୟ ସମାଜରେ ପରିବାର ଭିତରେ ବାପ ମାଲିକ, ସେଠାରେ ମାଆ ମାସୋକିଷ୍ଟ ହୋଇଥାଆନ୍ତି ଏବଂ ମାଆ ମାଲିକ ଥିବା ପରିବାରରେ ସ୍ୱାମୀ ମାସୋକିଷ୍ଟ ହୁଅନ୍ତି ।

ମାସୋକିଷ୍ଟମାନେ ନିଜେ ଦୁଃଖ କଷ୍ଟ ସହିବାରେ ଆନନ୍ଦ ପାଇଥାଆନ୍ତି; କିନ୍ତୁ ସମାଜରେ ଆଉ ଏକପ୍ରକାର ଲୋକ ଅଛନ୍ତି ଯେଉଁମାନେ କି ଅନ୍ୟକୁ ଦୁଃଖ-କଷ୍ଟ ଦେଇ ଆନନ୍ଦ ପାଇଥାଆନ୍ତି । ସେମାନଙ୍କୁ ସ୍ୟାଡ଼ିଷ୍ଟ (Sadist) କୁହାଯାଏ । ପୂର୍ବକାଳରେ କେତେକ ରାଜା ମହାରାଜା ବା ଜମିଦାରମାନେ ଅନ୍ୟର ସମ୍ପତ୍ତି, ଧନ, ଦୌଲତ, ରାଜ୍ୟ ଅଧିକାର କରି ଅନ୍ୟକୁ ଶାରୀରିକ କିମ୍ବା ଯୌନ ଯନ୍ତ୍ରଣା ଦେଇ ଆନନ୍ଦ ଲାଭ କରୁଥିଲେ । ଶିକାରୀ ପଶୁପକ୍ଷୀଙ୍କୁ ମାରି ଆନନ୍ଦ ଉପଭୋଗ କରେ । ଘରର ମାଲିକ ଚାକର ଚାକରାଣୀଙ୍କୁ ଦଣ୍ଡଦେଇ, ସ୍କୁଲରେ ଶିକ୍ଷକ ଛାତ୍ରଛାତ୍ରୀଙ୍କୁ ମାଡ଼ଦେଇ ନିଜର ମାନସିକ ସ୍ପୃହା ପୂର୍ଣ୍ଣ କରିଥାଆନ୍ତି । ଦୈନନ୍ଦିନ ଜୀବନରେ ମଧ୍ୟ ଦେଖିବାକୁ ମିଳେ ଯେ କାହାକୁ ପରୀକ୍ଷାରେ ଫେଲ୍ କରି, କାହାକୁ ଅର୍ଥଦଣ୍ଡ ଦେଇ କେତେକ ଲୋକ ଆନନ୍ଦ ଅନୁଭବ କରନ୍ତି । ଏହିପ୍ରକାର ସ୍ୟାଡ଼ିଷ୍ଟ ଚରିତ୍ରର ଲୋକମାନେ

ସାଧାରଣତଃ ଭଦ୍ରାଳୁ, ମାଇଚିଆ, ଅତି ଧାର୍ମିକ ଏବଂ ଖୁବ୍ କୁଟିଳ ସ୍ୱଭାବର ହୋଇଥାନ୍ତି ।

ସ୍ୟାଡ଼ିଷ୍ଟ ଚରିତ୍ରର ସ୍ରଷ୍ଟା ହେଉଛନ୍ତି ମାରକ୍ୱିସ-ଡି-ସ୍ୟାଡ଼େ (Marquis de Sade) ଯାହାଙ୍କ ନାମ ଅନୁସାରେ ଏମିତି ଚରିତ୍ରର ନାମ ସ୍ୟାଡ଼ିଜିମ୍ ହୋଇଛି । ସାଧାରଣ ଅର୍ଥରେ ଅନ୍ୟଙ୍କୁ ଯନ୍ତ୍ରଣା ଦେଇ ଆନନ୍ଦ ଲାଭ କରୁଥିବା ମନୋବୃତ୍ତିକୁ ସ୍ୟାଡ଼ିଜିମ୍ କୁହାଯିବା ସଙ୍ଗେ ସଙ୍ଗେ କେବଳ ଯୌନଯନ୍ତ୍ରଣାର ବାତାବରଣରେ ଆନନ୍ଦଲାଭ କରୁଥିବା ବ୍ୟକ୍ତିକୁ ସ୍ୟାଡ଼ିଷ୍ଟ ବୋଲି ମଧ୍ୟ କୁହାଯିବା କଥା । କାରଣ ମାରକ୍ୱିସ ଡି-ସ୍ୟାଡ଼େ ଏହିପରି ଏକ ନଷ୍ଟ ଚରିତ୍ରର ଲୋକ ଥିଲେ ।

ସାଧାରଣତଃ କେତେକ ପୁରୁଷ ସ୍ୟାଡ଼ିଷ୍ଟିକ ଚରିତ୍ରର ଲୋକ ହୋଇ-ଥାଆନ୍ତି । ନିଜର ସ୍ତ୍ରୀକୁ ଗାଳି ଅପମାନ ଦେବା, ବିଷ ଦେଇ ବା ବିଭିନ୍ନ ପ୍ରକାର ଯନ୍ତ୍ରଣା ଦେଇ ପ୍ରାଣରେ ମାରିଦେବାର ଅନେକ ଉଦାହରଣ ଅଛି । ଜଣେ ଜଣେ ଏକାଧିକ ସ୍ତ୍ରୀଲୋକଙ୍କୁ ହତ୍ୟାକରି ତାଙ୍କର ଅଙ୍ଗ-ପ୍ରତ୍ୟଙ୍ଗ କ୍ଷତବିକ୍ଷତ କରିବାର ଶୁଣାଯାଇଛି । ସମ୍ଭୋଗକାଳରେ ସ୍ତ୍ରୀଲୋକଙ୍କୁ ଅନ୍ଧ କରିବା, କୌଣସି ଧାରୁଆ ଅସ୍ତ୍ର ସାହାଯ୍ୟରେ ଆଘାତ କରିବାରେ ଅନେକ ଲୋକ ଆନନ୍ଦ ପାଇଥାଆନ୍ତି । ଆଉ କେତେକ ସ୍ୟାଡ଼ିଷ୍ଟିକ ଚରିତ୍ରର ଲୋକ ମହିଳାମାନଙ୍କୁ ସିଧାସଳଖ ଯନ୍ତ୍ରଣା ନଦେଲେ ମଧ୍ୟ ସେମାନଙ୍କର ଜୋତା ଓ ଚପଲକୁ ଖଣ୍ଡ ଖଣ୍ଡ କରି କାଟିଦେବା, ଫଟୋ ଦେଖିଲେ ଚିରିଦେବା, ଫଟୋରେ କଳାଗାର ପକାଇବା ବା ବେକକୁ କାଟିଦେବାରେ ଆନନ୍ଦ ପାଆନ୍ତି । କାରଣ ସ୍ୱରୂପ ଜଣାଯାଇଛି ଯେ, ଯେତେବେଳେ କୌଣସି ଲୋକ ହତାଶ ହୋଇଯାଏ ସେତେବେଳେ ତାର ହତାଶିଆ ମନର ଭାବ-ପ୍ରକାଶ ଏହିପରି କେତେକ କ୍ଷତିକାରକ ଉପାୟରେ ପ୍ରକାଶ କରେ । ହତାଶର ବିଭିନ୍ନ କାରଣ ଥିଲେ ମଧ୍ୟ ପ୍ରେମ-ବ୍ୟାପାରରେ ଯେତେବେଳେ ଜଣେ ପୁରୁଷ ହତାଶ ହୁଏ ସେତେବେଳେ ସେ ଆତ୍ମହତ୍ୟା କରେ, ସମସ୍ତ ସ୍ତ୍ରୀଜାତିକୁ ଘୃଣା ଚକ୍ଷୁରେ ଦେଖେ ଏବଂ ସେମାନଙ୍କର ଯନ୍ତ୍ରଣା କ୍ଷତି କରେ । ସ୍ତ୍ରୀ ହୋଇଥିଲେ ସେ ପୁରୁଷମାନଙ୍କୁ ଅପଦସ୍ଥ କରେ

କିମ୍ବା ଆତ୍ମହତ୍ୟା କରେ । ସ୍ୟାଡ଼ିଜିମ୍‌ର ଅନ୍ୟ ଏକ କାରଣ ହେଉଛି ପିଲାଟିଦିନରୁ ଜଣେ ମଣିଷ ଯଦି ଘରେ, ସମାଜରେ, ରେଡ଼ିଓରେ, ଟେଲି-ଭିଜନରେ ବା ସିନେମାରେ ଅପରକୁ ଯନ୍ତ୍ରଣା ଦିଆଯାଉଥିବା କଥା ଦେଖେ, ଦରକାର ହେଲେ ସେ ସେହି ପନ୍ଥା ଅନୁସରଣ କରିବାକୁ ଇଚ୍ଛା ପୋଷଣ କରେ । ଯଦି ଦୃଢ଼ତା ସହକାରେ ସମସ୍ତ ପ୍ରକାର ଯନ୍ତ୍ରଣାଦାୟକ ବା ହତ୍ୟାଜନିତ କାର୍ଯ୍ୟକଳାପ ବନ୍ଦ କରି ଦିଆଯାଉଥାଆନ୍ତା ତେବେ ପିଲାମାନେ ଆଉ ସେସବୁ ଶିଖିବାର ସୁଯୋଗ ପାଆନ୍ତେନାହିଁ ।

## ଆତ୍ମହେୟତ୍ୱ ଓ ଆତ୍ମଗରିମା

ମଣିଷମାନଙ୍କ ପାଖରେ ପରସ୍ପରବିରୋଧୀ ଆଉ ଦୁଇ ପ୍ରକାର ମନ ଥାଏ । ସେ ଦୁଇଟି ହେଲା ଆତ୍ମହେୟତ୍ୱ (Inferiority Complex) ଏବଂ ଆତ୍ମଗରିମା (Superiority Complex) । ଜଣେ ମଣିଷ ଏହି ଦୁଇପ୍ରକାର ମନ ଭିତରୁ କୌଣସି ଗୋଟିଏ ପ୍ରକାର ମନର ଅଧିକାରୀ ହୋଇପାରେ ।

ଆତ୍ମହେୟତ୍ୱର ଅର୍ଥ ହେଲା ନିଜକୁ ଶ୍ରେଷ୍ଠ ମନେକରିବା । କେତେକ ଲୋକ ଅଛନ୍ତି ଯେଉଁମାନେ କି ପଢ଼ାସାଥୀ, ଖେଳସାଥୀ, ସହକର୍ମୀ ଏବଂ ପଡ଼ୋଶୀମାନଙ୍କ ମଧ୍ୟରେ ନିଜକୁ ଶ୍ରେଷ୍ଠ ବୋଲି ମନେକରନ୍ତି । ସେଥିପାଇଁ କାମ କଲାବେଳେ, ଖେଳିଲାବେଳେ, ଯେକୌଣସି ସ୍ଥାନରେ ବସିଥିବା ବେଳେ କିମ୍ବା ଚଲାବୁଲା କଲାବେଳେ ସେମାନେ ଅନ୍ୟମାନଙ୍କ ସହିତ ମିଶିପାରନ୍ତି ନାହିଁ । ସେମାନେ ଭାବନ୍ତି ଯେ ଜାତି, ଧର୍ମ, ବର୍ଣ୍ଣ, ଶିକ୍ଷା, ବୁଦ୍ଧି, ବ୍ୟବହାର ଆଦିରେ ସେମାନେ ଖୁବ୍ ଶ୍ରେଷ୍ଠ । ଅନ୍ୟମାନେ ତାଙ୍କୁ ଘୃଣା ଚକ୍ଷୁରେ ଦେଖୁଛନ୍ତି; ତାଙ୍କଠାରୁ ଦୂରେଇଯାଉଛନ୍ତି । ଦଳଗତଭାବେ କୌଣସି ଏକ ନିଷ୍ପତ୍ତି ନେଲାବେଳକୁ ତାଙ୍କୁ ପଚରୁନାହାନ୍ତି; କୌଣସି ପ୍ରତିଯୋଗିତାରେ ଯୋଗଦେବାପାଇଁ ସେମାନେ ସମର୍ଥ ହେଉନାହାନ୍ତି । ଏହିପରି କେତେକ ଶକ୍ତି ଓ ସାମର୍ଥ୍ୟବିହୀନ ମନୋଭାବ ସେମାନେ ଦେଖାଇ ଆଆନ୍ତି । ସେହି କାରଣରୁ ମଧ୍ୟ ସେମାନେ ସବୁବେଳେ ଚିନ୍ତାଗ୍ରସ୍ତ ଥିଲାପରି

ଭାବନ୍ତି । ସେମାନେ ଭାବନ୍ତି ଯେ ସେମାନଙ୍କର ସ୍ୱାର୍ଥ କ୍ଷୁଣ୍ଣ ହେଉଛି । ମୁଣ୍ଡବ୍ୟଥା ହେଉଛି । ସବୁବେଳେ ଗୁରୁ ପୀଡ଼ା ଲାଗୁଛି ଇତ୍ୟାଦି । ତେଣୁ ଶାରୀରିକ ଓ ମାନସିକ ଉଭୟ କ୍ଷେତ୍ରରେ ସେମାନେ ନିଜକୁ ଖୁବ୍ ଶ୍ରେଷ୍ଠ ବୋଲି ଭାବଥାଆନ୍ତି ।

ନିଜକୁ ଖୁବ୍ ଶ୍ରେଷ୍ଠ ବୋଲି ଭାବିବାପାଇଁ ଜଣେ ଲୋକ ପକ୍ଷରେ ତାହା ପିଲାଟିଦିନରୁ ଶିଖିଥାଏ । ଉଦାହରଣସ୍ୱରୂପ ଧରାଯାଉ, ଜଣେ ଲୋକ ଗରିବ ପରିବାରରେ ଜନ୍ମ ହୁଏ । ପିଲାଟିଦିନରୁ ତାକୁ ଅଳ୍ପ ଖର୍ଚ୍ଚ କରି ଚଳିଆସେ । ବଡ଼ ହେବା ପରେ ଯେତେବେଳେ ସେ ସ୍କୁଲ ବା କଲେଜରେ ତାର ପଢ଼ାସାଥୀମାନଙ୍କର ଅମିତବ୍ୟୟିତା ଦେଖେ, ସେତେବେଳେ ଆର୍ଥିକ ଦୃଷ୍ଟିରୁ ସେ ନିଜକୁ ଶ୍ରେଷ୍ଠ ମନେକରେ । ଅନେକ ସମୟରେ ଗରିବ ବାପାମାଆ ଅଳ୍ପ ଖର୍ଚ୍ଚ କରିବାପାଇଁ ପିଲାକୁ ଶିଖାଇଥାଆନ୍ତି । ତାହା ପିଲାର ଅଭ୍ୟାସରେ ପରିଣତ ହୋଇଯାଇଥାଏ । ବାପାମାଆଙ୍କ ପ୍ରଭାବରୁ ପିଲାଟି ଯେପରି ନିଜେ ଗରିବ ବୋଲି ଶିଖେ, ସେହିପରି ସେ ଏକ ଆଦିବାସୀ, ହରିଜନ ବା ସମାଜରେ କୌଣସି ନିମ୍ନଶ୍ରେଣୀର ହୋଇଥିବା କଥା ଅନୁଭବ କରିଥାଏ । ତାର ଯାହା ଧାରଣା ଥାଏ, ପଢ଼ାସାଥୀ ଓ ପରିବେଷ୍ଟନୀର ସମ୍ପର୍କରେ ଆସିଲେ ତାହା ଦୃଢ଼ୀଭୂତ ହୁଏ । ଅବଶ୍ୟ ସ୍ଥଳବିଶେଷରେ ତାହା ବଦଳିଯାଏ । ଅନ୍ୟମାନଙ୍କ ତୁଳନାରେ ନିଜକୁ ଶ୍ରେଷ୍ଠ ବୋଲି ଭାବିବାର ଅନ୍ୟ କାରଣ ହେଉଛି, ଯଦି ଜଣେ ମଣିଷ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଉଚ୍ଚଆଶା ରଖି ହତାଶ ହୋଇଥାଏ ତେବେ ସେ ନିଜକୁ ହେୟ ମନେକରେ । ଅତୀତର ଅନୁଭୂତିକୁ ଆଖିଆଗରେ ରଖି ଭବିଷ୍ୟତରେ ଯେକୌଣସି କାର୍ଯ୍ୟପାଇଁ ସେ ପଛଘୁଞ୍ଚା ଦିଏ ।

ମଣିଷ ମନରେ ଆତ୍ମହେୟ ସ୍ୱଭାବ ସ୍ଥାନ ପାଏ ବୋଲି ପ୍ରଥମେ ୧୯୧୭ ମସିହାରେ ଭିଏନାର ଅଲ୍‌ଫ୍ରେଡ୍ ଆଡ଼ଲର (Alfred Adler) ନାମକ ଜଣେକ ଚିକିତ୍ସକ ମତ ଦେଇଥିଲେ । ତାଙ୍କ ମତରେ ଶିଶୁ ବୟସ୍କଙ୍କ ସହିତ ନିଜକୁ ତୁଳନା କରି ଦେଖେ ଯେ, ବୟସ୍କ ଲୋକଙ୍କ ଶରୀର

ତୁଳନାରେ ତାର ଶରୀର ଓ ଅଙ୍ଗ-ପ୍ରତ୍ୟଙ୍ଗ ଖୁବ୍ ଶ୍ରେଷ୍ଠ । ତାର ବସ୍ତୁର ବୁଦ୍ଧି, ଭାବନା ଇତ୍ୟାଦି ବୟସ୍କଙ୍କ ତୁଳନାରେ ଖୁବ୍ କମ୍ । କେବଳ ବୟସ୍କ ମଣିଷ ନୁହନ୍ତି, ଶିଶୁର ପର୍ଯ୍ୟବେକ୍ଷଣ ଭିତରେ ଥିବା ବୃକ୍ଷ, ଲତା, ପର୍ବତ, ନଦୀ, ସମୁଦ୍ର, ବୃହତ୍କାୟ ପଶୁପକ୍ଷୀ ଇତ୍ୟାଦି ତାକୁ ଖୁବ୍ ବଡ଼ ଜଣା-ଯାଆନ୍ତି । ତେଣୁ ସେମାନଙ୍କୁ ପୂଜା କରିବାର ଅଭିଳାଷ ତା' ମନ ଭିତରେ ସ୍ଥାନପାଏ ଏବଂ କ୍ରମଶଃ ତାହା ଧର୍ମରେ ପରିଣତ ହୁଏ । ବୟସ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ଶିଶୁ ମନର ଭାବନାରେ ପରିବର୍ତ୍ତନ ଆସେ । ସେ ନିଜେ ବଡ଼ହୋଇ ବୟସ୍କଙ୍କ ସହିତ ସମତାଳରେ ଚାଲିବା କରିବାକୁ ଇଚ୍ଛା-କରେ । ପରିପାର୍ଶ୍ୱରେ ଦେଖାଯାଉଥିବା ବୃହତ୍ ବସ୍ତୁଗୁଡ଼ିକୁ ନିଜ ଅକ୍ତିଆରରେ ରଖିବାକୁ ଚେଷ୍ଟାକରେ । ତେଣୁ ତାର ମନ ଭିତରେ ଥିବା ଶ୍ରେଷ୍ଠ ମନୋଭାବ ବିରୁଦ୍ଧରେ ସେ ନିଜେ ପ୍ରତିବାଦକରେ । ମନ ଭିତରେ ଥିବା ପ୍ରତିବାଦ ଓ ସାମାଜିକ ବାସ୍ତବତା ଭିତରେ ସବୁବେଳେ ଦ୍ୱନ୍ଦ୍ୱ ଲାଗିରହେ । ଦ୍ୱନ୍ଦ୍ୱର ଗୁରୁତା ଉପରେ ନିର୍ଭରକରି ତାର ଏକ ସାଧାରଣ ବ୍ୟକ୍ତିତ୍ୱ କିମ୍ବା "ହାମ୍ ବଡ଼ା" ବା ଆତ୍ମଗରିମା ସୂଚକ ଦେଖାଦେଇ-ଥାଏ ।

ଆତ୍ମଗରିମା ସାଧାରଣତଃ ଆତ୍ମହେୟତା ଭାବର ପ୍ରତିକ୍ରିୟାରୁ ଜାତ ହୋଇଥାଏ ଏବଂ ତାର କ୍ଷତିପୂରକ ଭାବରେ କାମ କରେ । ବହୁସମୟରେ ଆତ୍ମଗରିମାର ବଶବର୍ତ୍ତୀ ହୋଇ ଅନେକ ସମୟରେ ଅତ୍ୟନ୍ତ ଅଭଦ୍ର, ନିର୍ଦ୍ଦୟ ଓ ପ୍ରତିଦ୍ୱନ୍ଦ୍ୱୀପରାୟଣ ହୋଇଥାଏ । ଯୁଦ୍ଧରେ ପରାସ୍ତ ହୋଇ-ଯାଉଥିବା ସୈନିକ କେବଳ ନରହତ୍ୟା ଓ ନାରୀଧର୍ଷଣ କରେ । ଦୁର୍ବଳ ମଣିଷ ସାଧାରଣ କଥାରେ କଳିଆ କରେ ଏବଂ ଆକ୍ରମଣାତ୍ମକ ବ୍ୟବହାର ଦେଖାଏ । ଆତ୍ମଗରିମାପୁଷ୍ଟ ଆଉ କେତେକ ମଣିଷ କେବଳ ଲୋକ-ଦେଖାଣିଆ ବ୍ୟବହାର ଦେଖାଇଥାଆନ୍ତି, ଯେପରି ଦୁର୍ବଳମନା ରାଜନୀତିଜ୍ଞ ଓ ସମାଜସେବୀ ଭାଷଣ ମାଧ୍ୟମରେ ଅତ୍ୟଧିକ ଧର୍ମପରାୟଣତା ଓ ଆଦର୍ଶବାଦ ଦେଖାଇଥାନ୍ତି । ଆତ୍ମହେୟତାର ପ୍ରତିକ୍ରିୟା ସ୍ୱରୂପ କେତେକ ଗରିବ ଛାତ୍ର ଶିକ୍ଷାକ୍ଷେତ୍ରରେ ଖୁବ୍ ଉନ୍ନତି କରିଥାଆନ୍ତି ।

ଅନେକ ସମୟରେ ମଣିଷ ଭାବେ ଯେ ସେ ଅନ୍ୟମାନଙ୍କ ଅପେକ୍ଷା ଅଧିକ ବୁଦ୍ଧିମାନ୍, ଖୁବ୍ ସୁନ୍ଦର, ବଳଶାଳୀ, ଲୋକପ୍ରିୟ ଇତ୍ୟାଦି। ଏହିପରି କେତେକ ଆତ୍ମଗରିମା ସ୍ୱଭାବ ସବୁବେଳେ ଆତ୍ମହେୟ ଜ୍ଞାନର ପ୍ରତିକ୍ରିୟା ସ୍ୱରୂପ ଜନ୍ମ ହୋଇ ନଥାଏ। ମନ ଭିତରେ ଥିବା ଅନ୍ୟାନ୍ୟ ବୈଶିଷ୍ଟ୍ୟ ପରି ଏହା ମଧ୍ୟ ସ୍ୱତନ୍ତ୍ର। ପରିବେଷ୍ଟନୀର ପ୍ରଭାବରୁ ଏହା ପ୍ରଥମେ ମଣିଷ ମନ ଭିତରେ ସ୍ଥାନ ପାଇଥାଏ। ଉଦାହରଣ ସ୍ୱରୂପ ରାଜା, ଜମିଦାର ବା ଆଧୁନିକ ଯୁଗରେ କେତେକ ମନ୍ତ୍ରୀଙ୍କର ପିଲାମାନେ ଅନ୍ୟାନ୍ୟ ସମବୟସ୍କ ପିଲାଙ୍କ ଅପେକ୍ଷା ନିଜକୁ ବଡ଼ ହୋଇ ଭାବିବାକୁ ପିଲାଦିନରୁ ସୁଯୋଗ ପାଇଥାଆନ୍ତି। ସମାଜରେ ଉଚ୍ଚ ଜାତିର ଲୋକମାନେ ନୀଚଜାତିର ଲୋକଙ୍କୁ ଘୃଣା କରିବାର ମନୋଭାବ ପିଲାଦିନରୁ ହିଁ ପୋଷଣ କରିଥାଆନ୍ତି।

ଆତ୍ମହେୟ ଓ ଆତ୍ମଗରିମା ଉଭୟ ପ୍ରକାର ସ୍ୱଭାବ ମଣିଷ ପିଲାଟି ଦିନରୁ ବାପ, ମାଆ, ପରିବାର ଓ ବନ୍ଧୁବାନ୍ଧବଙ୍କ ପ୍ରଭାବରୁ ଶିକ୍ଷାଲାଭ କରିଥାଏ। ତେଣୁ ପିଲାଟିଦିନରୁ ଯଦି ପିଲାମାନଙ୍କର ବ୍ୟବହାର ନିୟନ୍ତ୍ରଣ କରାଯାଏ ଏବଂ ସେମାନଙ୍କୁ ଉଚିତ ଶିକ୍ଷା ଦିଆଯାଏ, ତେବେ ଭବିଷ୍ୟତରେ ସେମାନଙ୍କଠାରେ ଅସାମାଜିକ ବ୍ୟବହାରର ଆଶଙ୍କା ରହେନାହିଁ।

## ଅନ୍ତର୍ମୁଖୀ ଓ ବହିର୍ମୁଖୀ

ମଣିଷ ମନ ଭିତରେ ପରସ୍ପରବିରୋଧୀ ଅନ୍ୟ ଦୁଇଟି ଚରିତ୍ର ହେଲା ଅନ୍ତର୍ମୁଖୀ ବା ମୌନମୁହାଁ (Introvert) ଓ ବହିର୍ମୁଖୀ ବା ଖେଳଉଡ଼ା (Extrovert ଚରିତ୍ର। ଜଣେ ମଣିଷର ମନ ଭିତରେ ଦୁଇଟିଯାକ ଚରିତ୍ର ସ୍ଥାନ ପାଇପାରେ ନାହିଁ; ସେଥିମଧ୍ୟରୁ କେବଳ ଗୋଟିଏ ରହି-ପାରେ। ଅବଶ୍ୟ ଗୋଟିକର ଅନୁପସ୍ଥିତିରେ ଆଉ ଗୋଟିଏ ପ୍ରବେଶ କରିପାରେ। ଶିଶୁ ଅବସ୍ଥାରେ ଗୋଟିଏ ଚରିତ୍ର, ଯୌବନ ବା ବାର୍ଦ୍ଧକ୍ୟରେ ଆଉ ଗୋଟିଏ ଚରିତ୍ର ମଣିଷ ମନରେ ସମ୍ଭବ ହୋଇପାରେ।

ମୌନମୁହାଁ ଓ ଖେଲଓ୍ୱାଡ଼ ଚରିତ୍ରର ସ୍ରଷ୍ଟା ହେଉଛନ୍ତି ସୁଇଜରଲାଣ୍ଡର ମାନସିକ ଚିକିତ୍ସକ କାର୍ଲ ୟୁଙ୍ଗ (Carl Jung) । ସେ କହିଥିଲେ ଯେ ମଣିଷର ମନ ଯେତେବେଳେ ଅନ୍ତର୍ମୁଖୀ ହୁଏ, ସେ ସେତେବେଳେ ମୌନମୁହାଁ ହୁଏ ଏବଂ ତାର ମନ ଯେତେବେଳେ ବହିର୍ମୁଖୀ ହୁଏ ସେ ସେତେବେଳେ ଖେଲଓ୍ୱାଡ଼ ହୁଏ ।

ମୌନମୁହାଁର ମନ ଅନ୍ତର୍ମୁଖୀ ହେବାଦ୍ୱାରା ସେ ସବୁବେଳେ ନିଜ ବିଷୟରେ ଚିନ୍ତାକରେ; ନିଜ କଥା ଅନୁଭବ କରେ ଏବଂ ଏପରି ବ୍ୟବହାର ଦେଖାଏ, ଯାହାଦ୍ୱାରା ଜଣାପଡ଼େ ଯେ ସେ ନିଜେ ସଂସାର ଭିତରେ ଏକମାତ୍ର ମଣିଷ । ପରିବେଷ୍ଟନୀ, ବନ୍ଧୁବାନ୍ଧବ, ଶିକ୍ଷକ ଓ ବାପା-ମାଆଙ୍କର ମୂଲ୍ୟ ତାହା ନିକଟରେ କିଛି ନୁହେଁ । ଏପରିକି ସଂସାର ଭିତରେ ସେମାନଙ୍କର ଅସ୍ତିତ୍ୱ ସେ ଉପଲବ୍ଧି କରିପାରେନାହିଁ; ବରଂ ସମାଜ ଓ ପରିବେଷ୍ଟନୀଠାରୁ ନିଜକୁ ଦୂରରେ ରଖିବାକୁ ଚାହେଁ । ଜଣେ ମୌନମୁହାଁ ମଣିଷର ଅନ୍ୟ କେତୋଟି ଚରିତ୍ରଗତ ଗୁଣ ହେଉଛି ସେ ସବୁବେଳେ ଶାନ୍ତ, ଶିଷ୍ଟ ଓ ସୁବୋଧଭାବ ପରିଚୟ ଦିଏ । ଅନ୍ୟଙ୍କୁ ସନ୍ଦେହ-ଚକ୍ଷୁରେ ଦେଖେ ଏବଂ ନିଜ ଚରିତ୍ରକୁ ବାରମ୍ବାର ବିଶ୍ଳେଷଣ କରିବାରେ ସେ ଅଧିକାଂଶ ସମୟ କଟାଏ । ସେ ଏକଜିଦ୍ଖିଆ ହୋଇଥାଏ ଏବଂ ଆଇନକାନୁନ୍, ଆଦର୍ଶବାଦକୁ ମାନି ଚଳିବାପାଇଁ ଆପ୍ରାଣ ଚେଷ୍ଟାକରେ । ଏକାଗ୍ରତା ଭିତରେ ରହି ଦିବାସ୍ୱପ୍ନ ଦେଖିବାରେ ସେ ଅଭ୍ୟସ୍ତ ଥାଏ । ଏହି ଚରିତ୍ରର ମଣିଷ ଅଧିକ ଚିନ୍ତାଶୀଳ, ଅନୁଷ୍ଠାନପରାୟଣ, କଳ୍ପନାପ୍ରବଣ ଓ ଦାର୍ଶନିକ ମଧ୍ୟ ହୋଇଥାଏ ।

ମଣିଷର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ତାର ଚରିତ୍ରରେ ମଧ୍ୟ ପରିବର୍ତ୍ତନ ଦେଖାଦିଏ । ଶିଶୁ ଅବସ୍ଥାରେ ତାର ମୌନମୁହାଁ ସ୍ୱଭାବ ଥାଏ କିନ୍ତୁ କିଛି ଦିନକୁ ତାହା ବଦଳିଯାଏ । ସେହିପରି ପିଲାଦିନର ଖେଲଓ୍ୱାଡ଼ ସ୍ୱଭାବ ବଡ଼ ଦିନକୁ ରହେନାହିଁ । ପରିବେଷ୍ଟନୀର ପ୍ରଭାବରୁ ମଣିଷ ଗୋଟିଏ ଗୁଣ ହାସଲ କରିଥାଏ ଏବଂ ସେହି ପରିବେଷ୍ଟନୀ ପ୍ରଭାବରୁ ତାହା ପୁଣି ବଦଳି-ଯାଏ । ତାର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଶାରୀରିକ ଓ ମାନସିକ ପରିପୁଷ୍ଟତା

ଏବଂ ପରିବେଷ୍ଟନୀ ଭିତରେ ବାପା, ମାଆ, ଶିକ୍ଷକ ଓ ବନ୍ଧୁମାନଙ୍କର ପ୍ରଭାବ ଏଥିପାଇଁ ମୁଖ୍ୟତଃ ଦାୟୀ ।

ମଣିଷର ମୌଳିକ ସ୍ୱଭାବ ବଦଳିଯାଇ ଖେଳଓ୍ୱାଡ଼ ସ୍ୱଭାବ ହୋଇଗଲେ, ସେମାନେ ଅନ୍ୟମାନଙ୍କ ସହିତ ଖୁବ୍ ମିଳିମିଶି ଚଳିପାରନ୍ତି । ଯେପରି ମଣିଷମାନଙ୍କର ଆଗ୍ରହ ନିଜ ପ୍ରତି ନ ହୋଇ ବନ୍ଧୁ, ସମାଜ ବା ବାହାରର କୌଣସି ବସ୍ତୁ ପ୍ରତି ହୋଇଥାଏ । ସେମାନଙ୍କର ନିଜର ଚିନ୍ତାଧାରା ଓ ବ୍ୟବହାର ଯେପରି ପରିବେଷ୍ଟନୀଗତ ହୋଇଥାଏ ସେହିପରି ପରିବେଷ୍ଟନୀ ମଧ୍ୟ ସେହି ମଣିଷମାନଙ୍କର ବ୍ୟବହାର ନିୟନ୍ତ୍ରଣ କରେ । ଉଦାହରଣ ସ୍ୱରୂପ ବନ୍ଧୁମାନଙ୍କ ପ୍ରରୋଚନାରେ ଖେଳଓ୍ୱାଡ଼ ସ୍ୱଭାବର ଛାତ୍ରମାନେ ପରୀକ୍ଷାପାଇଁ ପ୍ରସ୍ତୁତ ହେବା ପରିବର୍ତ୍ତେ ସିନେମା ଦେଖିଯିବାପାଇଁ ଅଧିକ ଭଲପାଆନ୍ତି । ଖେଳଓ୍ୱାଡ଼ ମଣିଷଙ୍କର ଆଉ କେତେଗୁଡ଼ିଏ ସାଧାରଣ ଗୁଣ ହେଉଛି—ସେମାନେ ସ୍ୱାର୍ଥତ୍ୟାଗୀ । ବନ୍ଧୁମାନଙ୍କ ଗହଣରେ ନିଜ ସାରା ଦିନ କଟାଇଦେବାକୁ ସେମାନେ ଟିକିଏ ହେଲେ କୁଣ୍ଠାବୋଧ କରନ୍ତି ନାହିଁ । ସେମାନଙ୍କର ବ୍ୟବହାର ଆବଶ୍ୟକତା ଅନୁଯାୟୀ ପରିବର୍ତ୍ତିତ ହୋଇପାରେ । ସେମାନେ ଖୁବ୍ ବାସ୍ତବବାଦୀ । ନିଜେ କୌଣସି ସମାଲୋଚନାକୁ କର୍ଣ୍ଣପାତ କରନ୍ତିନାହିଁ କିମ୍ବା କୌଣସି କଥା ବା କାର୍ଯ୍ୟପାଇଁ ଅପରକୁ ସନ୍ଦେହ ଚକ୍ଷୁରେ ଦେଖନ୍ତିନାହିଁ । ଦିବାସ୍ୱପ୍ନ ବା ନିଜର ବିଶ୍ଳେଷଣ ସେମାନଙ୍କର ଗୁଣର ବାହାରେ । ସେମାନଙ୍କର ଅନ୍ୟ କେତେଗୁଡ଼ିଏ ଆକର୍ଷଣୀୟ ଗୁଣ ହେଉଛି—ସେମାନେ ଖୁବ୍ ଖୋଲା, ଉଦାରମନା, ସହାନୁଭୂତିଶୀଳ ଏବଂ ପରୋପକାରୀ । ସେହିମାନଙ୍କ ଭିତରୁ ମଧ୍ୟ ବୈଜ୍ଞାନିକ, ଡାକ୍ତର, ଇଞ୍ଜିନିୟର, ଦାର୍ଶନିକ ଇତ୍ୟାଦି ବାହାରିପାଆନ୍ତି । ଏହି ସ୍ୱଭାବର ମଣିଷମାନଙ୍କର ସବୁବେଳେ ଜୀବନରେ ଉଚ୍ଚ ଆଶା ଥାଏ ଏବଂ ତାହା କାର୍ଯ୍ୟକାରୀ କରିବାପାଇଁ ସେମାନେ ବିଭିନ୍ନ ପ୍ରକାର ପଦକ୍ଷେପ ନେଇଥାନ୍ତି; କିନ୍ତୁ ମୌନମୂହାଁ ସ୍ୱଭାବର ମଣିଷମାନଙ୍କ ନିକଟରେ ସେପରି କୌଣସି ଉଚ୍ଚଆଶା ନ ଥିବା କଥା ସମାଜ ବିଜ୍ଞାନ ଗବେଷଣାଦ୍ୱାରା ଜଣାଯାଇଛି ।

ମୌନମୁଖଙ୍କ କିମ୍ବା ଖେଳଓ୍ବାଡ଼ି ସ୍ୱଭାବର ମଣିଷ ସମାଜରେ ପ୍ରାୟ ଖୁବ୍ କମ୍ ଅଛନ୍ତି । ଉଦାହରଣ ସ୍ୱରୂପ ସମାଜରେ ଥିବା ସାଧାରଣ ଲୋକସଂଖ୍ୟା ଭିତରୁ ଶତକଡ଼ା ୫ରୁ ୧୦ଭାଗ ମଣିଷ ମୌନମୁଖ ସେହିପରି ୫ରୁ ୧୦ଭାଗ ମଣିଷ ଖେଳଓ୍ବାଡ଼ି । ବାକି ଶତକଡ଼ା ୮୦ରୁ ୯୦ ଭାଗ ମଣିଷ ଉପରୋକ୍ତ କୌଣସି ଗୋଷ୍ଠୀ ଭିତରେ ଯାଆନ୍ତି ନାହିଁ । ସେମାନଙ୍କୁ ଆମ୍ବିଭର୍ଟ (Ambivert) କୁହାଯାଏ । ସେମାନଙ୍କର ମନ ସ୍ୱାଭାବିକ ହୋଇଥାଏ । ମଣିଷମାନଙ୍କ ଭିତରେ ଦେଖାଯାଉଥିବା ସମସ୍ତ ପ୍ରକାର ମନ ସାମାଜିକ ପରିବେଶରୁ ସୃଷ୍ଟିହୋଇଥାଏ ।

## ଆତ୍ମ-ନିୟନ୍ତ୍ରିତ ଓ ପର-ନିୟନ୍ତ୍ରିତ ମନ

ମଣିଷର ଅସ୍ଥିର ମନ ଭିତରେ ସେ କେତେବେଳେ ଭାବେ ଯେ ତାର ସମସ୍ତ ବ୍ୟବହାର ଓ ତାର ଚାରିପଟେ ଘଟୁଥିବା ଘଟଣାବଳୀର ନିୟନ୍ତ୍ରଣ-କାରୀ ସେ ନିଜେ, ଆଉ କେତେବେଳେ ସେ ଭାବେ ଯେ ଏ ସମସ୍ତ ଘଟଣାବଳୀର ନିୟନ୍ତ୍ରଣକାରୀ ସେ ନିଜେ ନୁହେଁ ଆଉ କେହି ଜଣେ କେହି ହୋଇଥାଏ । ମଣିଷର ଏହି ଦୁଇ ପ୍ରକାର ମନକୁ ମନସ୍ତାତ୍ତ୍ୱିକମାନେ ଗବେଷଣା ମାଧ୍ୟମରେ ବିଶ୍ଳେଷଣ କରିବାକୁ ସକ୍ଷମ ହୋଇଛନ୍ତି । ପ୍ରଥମ ପ୍ରକାର ମନକୁ ଆତ୍ମ-ନିୟନ୍ତ୍ରିତ (Internal Locus of Control) ଓ ଦ୍ୱିତୀୟ ପ୍ରକାର ମନକୁ ପର-ନିୟନ୍ତ୍ରିତ (External Locus of Control) ବୋଲି କୁହାଯାଏ । ଜଣେ ମଣିଷ କେଉଁ ଶ୍ରେଣୀର ଅନ୍ତର୍ଭୁକ୍ତ ଜାଣିବାପାଇଁ କେତେଗୁଡ଼ିଏ ସହଜ ଉପାୟ ଅଛି । ସେଥିରୁ ଗୋଟିଏ ହେଲା ବିଭିନ୍ନ ପ୍ରକାର ପ୍ରଶ୍ନ ପଚାରି ତାର ଉତ୍ତର ନିଆଯାଏ ଏବଂ ସେହି ଉତ୍ତରରୁ ସେ କେଉଁ ଶ୍ରେଣୀର ଲୋକ ତାହା ସହଜରେ ଜାଣିହୁଏ । ଉଦାହରଣସ୍ୱରୂପ ଜଣକ ଆଗରେ ଦୁଇଟି ମତାମତ ପଢ଼ି ଶୁଣାଇଦିଆଗଲା —(କ) "ଜଣେ ପ୍ରଭାବଶାଳୀ ନେତା ହୋଇ ଉପରକୁ ଉଠିବାଟା ବହୁ ପରିମାଣରେ ନିଜର ଭାଗ୍ୟ ଓ ଘଟଣାର ଯୋଗାଯୋଗ ଉପରେ ନିର୍ଭର କରେ ।" (ଖ) "ନିଜ ଜୀବନରେ ଆସିଥିବା ସୁଯୋଗକୁ ହାତରେ ଧରି

ମଧ୍ୟ ଅବହେଳା କରିପାରନ୍ତି ବନ୍ଧୁ ଯୋଗ୍ୟଲୋକ ଉପରକୁ ଉଠିପାରି ନାହାନ୍ତି ।" ଏ ଦୁଇଟି ମତାମତ ଭିତରୁ ସେ ଯଦି ପ୍ରଥମଟିକୁ ତାଙ୍କର ନିଜସ୍ୱ ମତ ବୋଲି ଗ୍ରହଣ କରନ୍ତି, ତେବେ ସେ ଜଣେ ପରନିୟନ୍ତ୍ରିତ ମଣିଷ ବୋଲି ବୁଝାଯିବ । ସେହିପରି ଆଉ ଦୁଇଟି ମତାମତ ହେଲା— (କ) "ମୋ ନିଜ ଯୋଗୁଁ ହିଁ ମୁଁ ଜୀବନରେ ସୁଖରେ ରହିବି କି ଦୁଃଖରେ ରହିବି—ଆଉ କାହା ଯୋଗୁଁ ନୁହେଁ ।" (ଖ) "ମୋର ଜୀବନର ଗତି ଯେ କେଉଁଆଡ଼େ, ସେ କଥା ମୁଁ ଜାଣେନା ଏବଂ ତା' ଉପରେ ମୋର କୌଣସି ହାତ ନାହିଁ ।" ଯେଉଁ ଲୋକ ଦ୍ୱିତୀୟଟିକୁ ନିଜର ମତ ବୋଲି ଭାବେ ସେ ଜଣେ ପର-ନିୟନ୍ତ୍ରିତ ବ୍ୟକ୍ତି ଓ ଯେଉଁ ଲୋକ ପ୍ରଥମଟିକୁ ନିଜର ମତବୋଲି ବୁଝେ ସେ ଜଣେ ଆତ୍ମ-ନିୟନ୍ତ୍ରିତ ବ୍ୟକ୍ତି ବୋଲି ଗ୍ରହଣ କରାଯାଏ । କୌଣସି ଛାତ୍ର, ଶିକ୍ଷକ, ଶ୍ରମିକ, କୃଷକ, କିରାଣୀ କିମ୍ବା ଶାସକ କେଉଁ ଶ୍ରେଣୀର ଅନ୍ତର୍ଭୁକ୍ତ ହେବେ ଜାଣିବାପାଇଁ ଭିନ୍ନ ଭିନ୍ନ ପ୍ରକାରର ପ୍ରଶ୍ନାବଳୀ ଅଛି । ତା ସାହାଯ୍ୟରେ ଉପରୋକ୍ତ ଯେକୌଣସି ବ୍ୟକ୍ତିଙ୍କର ମତାମତ ନେଇ ତାଙ୍କର ବ୍ୟକ୍ତିତ୍ୱ ନିରୂପଣ କରାଯାଏ ।

ମଣିଷର ଆତ୍ମ-ନିୟନ୍ତ୍ରିତ ଓ ପରନିୟନ୍ତ୍ରିତ ମନ ଆଧୁନିକ ମନସ୍ତାତ୍ତ୍ୱିକ ଗବେଷଣା କ୍ଷେତ୍ରରେ ଯଥେଷ୍ଟ ଉପାଦାନ ଯୋଗାଇଛି । ଅନୁଧ୍ୟାନ କରି ଜଣାଯାଇଛି ଯେ, ମଣିଷର ବୟସ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ତାର ବ୍ୟକ୍ତିତ୍ୱର ପରିବର୍ତ୍ତନ ହୁଏ । ଶିଶୁ ଓ କିଶୋର ଅବସ୍ଥାରେ ଯେତେବେଳେ ସେ ବାପା-ମାଆଙ୍କର ଶାସନାଧୀନ ହୋଇଥାଏ ଏବଂ ସ୍କୁଲ କଲେଜକୁ ଗଲାପରେ ସେ ଯେତେବେଳେ ଶିକ୍ଷକ ଏବଂ ଆଇନ ଶୃଙ୍ଖଳାର ବଶବର୍ତ୍ତୀ ହୋଇଥାଏ, ସେତେବେଳେ ତାର ମନ ପର-ନିୟନ୍ତ୍ରିତ ହୁଏ । କିନ୍ତୁ ତା ପରେ ସାମାଜିକ କ୍ଷେତ୍ରରେ ପ୍ରବେଶ କଲାପରେ ରାଜନୀତି, ବ୍ୟବସାୟ, ପରିବାରର ପରିଚାଳନା ଇତ୍ୟାଦି କ୍ଷେତ୍ରରେ ତାର ନିଜର ଇଚ୍ଛାନୁଯାୟୀ କାର୍ଯ୍ୟକାରୀ କରିବାପାଇଁ ଚେଷ୍ଟାକରେ । ଅବଶ୍ୟ ବ୍ୟକ୍ତିଗତ ତାରତମ୍ୟ ହେତୁ କେତେକ ମଣିଷଙ୍କର ସ୍ୱଭାବରେ ପରିବର୍ତ୍ତନ ଆସେନାହିଁ ଏବଂ ଆଉ କେତେକ ମଣିଷ ଈଶ୍ୱରବିଶ୍ୱାସ ଓ ବୟସ୍କଙ୍କ ଉକ୍ତିକରୁଥିବାର ଫଳନାଳିର ପର-

ନିୟନ୍ତ୍ରିତ ହୋଇଥିବା କଥା ସମାଜକୁ ଦେଖାଇଥାନ୍ତି ।

ପ୍ରତ୍ୟେକ ପ୍ରତ୍ୟେକ କାର୍ଯ୍ୟରେ ସଫଳତା ଓ ବିଫଳତା ଆସିଥାଏ । ଯେଉଁମାନଙ୍କର ଆତ୍ମ-ନିୟନ୍ତ୍ରିତ ବ୍ୟକ୍ତିତ୍ୱ, ସେମାନେ ... ପ୍ରତି ବିଶେଷ ଦୃଷ୍ଟି ଦିଅନ୍ତି ନାହିଁ । ସେମାନେ ନିଜ କର୍ତ୍ତବ୍ୟ ... ଆନନ୍ଦ ପାଇଥାଆନ୍ତି । ନିଜ କାର୍ଯ୍ୟର କୌଣସି ଦୋଷ ତ୍ରୁଟି ଜାଣିବାକୁ ପାଇଲେ ତାକୁ ସଂଶୋଧନ କରିବାରେ ଏବଂ ପୁନର୍ବାର ନିଜ କର୍ତ୍ତବ୍ୟ ପଥରେ ଆଗେଇବାରେ ସେମାନେ ନିଜକୁ ନିୟୋଗ କରନ୍ତି । ପରନିୟନ୍ତ୍ରିତ ବ୍ୟକ୍ତିଙ୍କ କଥା ସମ୍ପୂର୍ଣ୍ଣ ଭିନ୍ନ । ଯେ କୌଣସି କାମ ଆରମ୍ଭକରିବା ପୂର୍ବରୁ ସେମାନେ ପ୍ରଥମେ ଈଶ୍ୱରଙ୍କ ଆଶୀର୍ବାଦ ଭିକ୍ଷା କରିଥାଆନ୍ତି । ନିଜ କାମରେ ଯଦି ବିଫଳ ହୁଅନ୍ତି, ତେବେ ସବୁଦିନ ପାଇଁ ସେଥିରୁ ନିବୃତ୍ତ ହୋଇଯାଆନ୍ତି । ସମାଜର ଲୋକମାନେ ସେମାନଙ୍କର କାର୍ଯ୍ୟକୁ କେତେ ଦୂର ପସନ୍ଦ କରୁଛନ୍ତି ବା ନିନ୍ଦା କରୁଛନ୍ତି ତାହା ସେମାନେ ଖୁବ୍ ସତର୍କତାର ସହିତ ଲକ୍ଷ୍ୟକରନ୍ତି । ସାମାଜିକ ପ୍ରଶଂସା ସେମାନଙ୍କୁ ଅଧିକ କାର୍ଯ୍ୟକ୍ଷମ କରାଏ; କିନ୍ତୁ ମୌଖିକ ପ୍ରଶଂସା ଅପେକ୍ଷା ଅର୍ଥ ବା କୌଣସି ବସ୍ତୁ ପୁରସ୍କାର ସ୍ୱରୂପ ପାଇଲେ ସେମାନେ ଅଧିକ କାର୍ଯ୍ୟକ୍ଷମ ହୁଅନ୍ତି । ଅପରପକ୍ଷରେ ଯଦି ସେମାନଙ୍କର କୌଣସି କାର୍ଯ୍ୟପାଇଁ ଦଣ୍ଡପାଆନ୍ତି, ତାହା ସେମାନଙ୍କର ମନରେ ଅଧିକ ପ୍ରଭାବ ପକାଏ ।

ପୁରୁଷମାନଙ୍କ ପରି ସ୍ତ୍ରୀମାନଙ୍କ ମନ ଭିତରେ ଆତ୍ମ-ନିୟନ୍ତ୍ରିତ ଓ ପର-ନିୟନ୍ତ୍ରିତ ସ୍ୱଭାବ କାର୍ଯ୍ୟକାରୀ ହେଉଥାଏ । ଉଭୟ ପ୍ରକୃତିର ସ୍ତ୍ରୀଙ୍କର ବ୍ୟବହାରକୁ ତୁଳନାକରି ଦେଖାଯାଇଛି ଯେ, ଆତ୍ମ-ନିୟନ୍ତ୍ରିତ ସ୍ତ୍ରୀଙ୍କ ଅପେକ୍ଷା ପର-ନିୟନ୍ତ୍ରିତ ସ୍ତ୍ରୀମାନେ ଅଧିକ ବିଶୃଙ୍ଖଳିତ । ସେମାନଙ୍କର ବ୍ୟବହାର ବା କାର୍ଯ୍ୟରେ କୌଣସି ଶୃଙ୍ଖଳା ଥିବା କଥା ଜଣାପଡ଼େନାହିଁ । କୌଣସି କାର୍ଯ୍ୟପାଇଁ ସେମାନଙ୍କର ଭବିଷ୍ୟତ ଯୋଜନା ନଥାଏ ବା ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନଥାଏ । ବିନା ବିଚାରରେ ସେମାନେ ଯାହା ଇଚ୍ଛା କରନ୍ତି । ତେଣୁ ସେମାନଙ୍କର ନିଜ କାର୍ଯ୍ୟରେ ମଧ୍ୟ ସେମାନେ ସନ୍ତୋଷ ପ୍ରକାଶକରି ପାରନ୍ତିନାହିଁ । ପର-ନିୟନ୍ତ୍ରିତ ସ୍ତ୍ରୀମାନଙ୍କର ଧୀଶକ୍ତି ଆତ୍ମନିୟନ୍ତ୍ରିତ ସ୍ତ୍ରୀ-

ମାନଙ୍କ ଧୀଶକ୍ତି ଅପେକ୍ଷା କମ୍ ହୋଇଥିବା କଥା ବିଭିନ୍ନ ପ୍ରକାର ପରୀକ୍ଷାରୁ ଜଣାଯାଇଛି । ପର-ନିୟନ୍ତ୍ରିତ ବ୍ୟକ୍ତି ସାଧାରଣତଃ ଧର୍ମବାଦୀ ହୋଇଥିଲେ ଆତ୍ମ-ନିୟନ୍ତ୍ରିତମାନଙ୍କ ଅପେକ୍ଷା ସ୍ତ୍ରୀମାନେ ଅଧିକ ଦୈବବାଦୀ ହୋଇଥାଆନ୍ତି ।

ଆତ୍ମ-ନିୟନ୍ତ୍ରିତ ଓ ପର-ନିୟନ୍ତ୍ରିତ ମନ ଭିତରେ ଅନ୍ୟାନ୍ୟ ଅନେକ ଚରିତ୍ରଗତ ପାର୍ଥକ୍ୟ ଦେଖାଯାଇଅଛି । ସେମାନଙ୍କର ଧୀଶକ୍ତି ତୁଳନା କରି ଦେଖାଯାଇଛି ଯେ, ଆତ୍ମ-ନିୟନ୍ତ୍ରିତ ବ୍ୟକ୍ତି ଅଧିକ ବୁଦ୍ଧିମାନ୍ । ପର-ନିୟନ୍ତ୍ରିତ ବ୍ୟକ୍ତିଙ୍କ ପରି ସେମାନେ ଉଚ୍ଚ ଆଶା ନକରି ଅଧିକ କାର୍ଯ୍ୟ ସମ୍ପାଦନ କରିଥାଆନ୍ତି । ଉଭୟ ପ୍ରକାର ବ୍ୟକ୍ତିଙ୍କର ଧର୍ମ ଓ ବିଜ୍ଞାନ ପ୍ରତି ଥିବା ମନୋଭାବରୁ ଜଣାଯାଇଛି ଯେ ଆତ୍ମ-ନିୟନ୍ତ୍ରିତ ବ୍ୟକ୍ତିମାନେ ବିଜ୍ଞାନ ପ୍ରତି ଅଧିକ ଆଗ୍ରହୀ । କାରଣ ଈଶ୍ୱରବିଶ୍ୱାସ, ନୈତିକତା, ପରମ୍ପରା ପ୍ରତି ବିଶ୍ୱାସ ଧର୍ମ ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ହୋଇଥିବା ହେତୁ ପର-ନିୟନ୍ତ୍ରିତ ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱ ତାହାରି ଉପରେ ନିର୍ଭର କରି ଗଢ଼ିଉଠିଥାଏ । ସମାଜରେ ମିଳିମିଶି ରହିବା ଏବଂ କୌଣସି କାର୍ଯ୍ୟ ମିଳିମିଶି କରିବାକୁ ପରନିୟନ୍ତ୍ରିତ ବ୍ୟକ୍ତି ଅଧିକ ପସନ୍ଦ କରିଥାଏ । ମିଳିମିଶି କାର୍ଯ୍ୟ-କରିବା ସମୟରେ ପର-ନିୟନ୍ତ୍ରିତ ବ୍ୟକ୍ତି ନିଜେ ଆନନ୍ଦ ପାଇବା ସଙ୍ଗେ ସଙ୍ଗେ ଅନ୍ୟ ଲୋକମାନେ ଆନନ୍ଦ ପାଇବା ଦେଖି ସେ ଅଧିକ ଆନନ୍ଦ ଅନୁଭବ କରେ ଏବଂ ଉତ୍ସାହିତ ହୁଏ; କିନ୍ତୁ ଆତ୍ମ-ନିୟନ୍ତ୍ରିତ ବ୍ୟକ୍ତି ନିଜ କାର୍ଯ୍ୟରେ ଅଧିକ ସନ୍ତୋଷ ଲାଭକରେ । ବାଦବିବାଦମୂଳକ କାର୍ଯ୍ୟରେ ଯୋଗଦେଇ କୃତକାର୍ଯ୍ୟ ହେବାପାଇଁ ସେ ପ୍ରଯତ୍ନ କରେ ଏବଂ ପରିଣାମରେ ସେ ଆନନ୍ଦିତ ହୁଏ । ଏହିପ୍ରକାର ବ୍ୟକ୍ତିତ୍ୱ କିପରି ଗଢ଼ିଉଠେ ତାହା ଜାଣିବା ପାଇଁ ବର୍ତ୍ତମାନ ବିଶେଷଭାବେ ଅନୁସନ୍ଧାନ କରାଯାଉଅଛି ।

---